# ଛାତ୍ରସାଥୀ : ପ୍ରଶ୍ନୋତ୍ତର (୫୫)

## ଓ

## କେନେଡ଼ି

୨୩ଶ ବର୍ଷ ● ମେ ସଂଖ୍ୟା ● ୧୯୮୪ ● ଅଙ୍କ ● ମୂଲ୍ୟ ଟ ୨-୦୦

RATE OF ADVERTISEMENT

| | |
|---|---|
| Full Page | Rs. 500-00 |
| Half Page | Rs. 300-00 |
| Back Cover Page (Single colour) | Rs. 600-00 |
| Back of the front Cover (Black & White) | Rs. 550-00 |
| Back of the back Cover (Black and White) | Rs. 550-00 |

TERMS OF PAYMENT

Advertisement sent through recognised advertising agencies ( accredited ) requires no advance.

Advertisement sent directly should be paid full dues in advance by account payee Bank Draft in favour of 'THE CHHATRASATHI' payable at CUTTACK only.

Address :

J. MOHAPATRA & Co.
CUTTACK-2 (ORISSA)

Printed and Published by Sri Brundaban Das on behalf of M/s. J. Mohapatra & Co., Cuttack.
Printed at G. P. Press, Kaligali, Cuttack-2

**CHHATRASATHI**
( General Knowledge Monthly )

Editor :
**Sri Subas Sarangi**

Mg. Editor :
**Sri N. K. Mohapatra**

**Published by**
**J. MOHAPATRA & Co.**
Cuttack-2 (Orissa)

●

ସଂପାଦକ :
ଶ୍ରୀ ସୁବାସ ଷଡ଼ଙ୍ଗୀ

ପରିଚାଳନା ସଂପାଦକ :
ଶ୍ରୀ ନବକିଶୋର ମହାପାତ୍ର

ପ୍ରକାଶକ
ଜେ. ମହାପାତ୍ର ଏଣ୍ଡ କୋ.
କଟକ-୨

ଆଜି ପାପାଙ୍କ ଘରେ
ଆନନ୍ଦ ନାହିଁ କାହିଁକି ?



ଆପଣଙ୍କ ଘରକୁ
ବୋଧହୁଏ
[illegible]
(ମାସିକ ଶିଶୁ ପତ୍ରିକା)
ଆସୁ ନାହିଁ ।।

•

ନିଜ ପିଲାଙ୍କ ମନୋରଞ୍ଜନ ତଥା
ଜ୍ଞାନ ବୃଦ୍ଧି ପାଇଁ
ପ୍ରତିମାସରେ



[illegible]
(ମାସିକ ଶିଶୁ ପତ୍ରିକା)-
କିଣନ୍ତୁ ।

ପ୍ରତି ଖଣ୍ଡର ମୂଲ୍ୟ ଟ୨-୦୦
ପ୍ରାପ୍ତିସ୍ଥାନ
ଜେ. ମହାପାତ୍ର ଝଣ୍ଡୁ ଚୋ:
କଟକ - ୨

# କେନେଡି

କେନେଡି ଯେ, ଏକ ମହାନ ପ୍ରତିଭାର ଅଧିକାରୀ ଏକଥା ଅନସ୍ୱୀକାର୍ଯ୍ୟ ।

ତାଙ୍କ ପିଲାଦିନେ ସେ ନ୍ୟୁୟର୍କର ବ୍ରଙ୍କସ୍‌ଭିଲଠାରେ ଗୋଟାଏ ଖୁବ୍ ବଡ଼ଘରେ ରହୁଥିଲେ । ଘରଟି ପୁରୁଣାକାଳିଆ ଜର୍ଜିୟାନ ଷ୍ଟାଇଲରେ ତିଆରି । ବ୍ରଙ୍କସଭିଲ ନ୍ୟୁୟର୍କ ସହରର ଉତ୍ତରକୁ ଗୋଟିଏ ଭାରି ସୁନ୍ଦର ଜାଗା । ସେଇଠି ଗୋଟାଏ ଖୁବ୍ ବଡ଼ ପଡ଼ିଆ ଭିତରେ ସେଇ ଘରଟି ଅବସ୍ଥିତ । ଏହା ପ୍ରାୟ ୧୯୨୯ ମସିହାର କଥା ।

ସେଇ ଘରର ତଳ ମହଲାରେ ଗୋଟିଏ ବଖରାରେ ଦୁଇଜଣ ପିଲା ଲଢ଼େଇରେ ଲାଗିପଡ଼ିଥାନ୍ତି । ଦୁଇଜଣଯାକ ଦୁଇ ଭାଇ । ବଡ଼ଭାଇ ନା ଜୋ—ବୟସ ପ୍ରାୟ ଚଉଦ ବର୍ଷ, ସେଇପରି ସାନଭାଇ ନା ଜନ ; କିନ୍ତୁ ଡାକନ୍ତି ସମସ୍ତେ ଜାକ୍ । ତା'ର ବୟସ ବାରବର୍ଷ । ପରିବାରର ଅନ୍ୟ ସଦସ୍ୟମାନେ ବସି ଏଇ ଲଢ଼େଇ ଦେଖୁଥାଆନ୍ତି । ଯେତେବେଳେ ଏଇ ଦୁଇଭାଇଙ୍କ ମଧ୍ୟରେ ଲଢ଼େଇ ହୁଏ, ସେତେବେଳେ ଜୋ ଜିତେ ; କିନ୍ତୁ ଜାକ୍ ଛାଡ଼ିଲାବାଲା ନୁହେଁ । ହାରିଲେ ମଧ୍ୟ ସେ ଯଥାସମ୍ଭବ ପ୍ରତିରୋଧ କରେ । ଲଢ଼େଇ ପରେ ସେମାନେ ପୁଣି ଏକାଠି ହୋଇଯାଇ ବାହାରକୁ ଖେଳିବା ପାଇଁ ଚାଲିଯାଆନ୍ତି ।

ପିଲାମାନେ ଖେଳିବାକୁ ବାହାରିପଡ଼ିଲେ ବାପା ଜୋସେଫ ପି. କେନେଡି ବାହାରେ ଛିଡ଼ାହୋଇ ପିଲାଙ୍କ ଖେଳ ଦେଖନ୍ତି । କେତେବେଳେ ଏ ଦଳକୁ, କେତେ-ବେଳେ ସେ ଦଳକୁ ନାନା ପ୍ରକାର ଧ୍ୱନିଦେଇ ଉତ୍ସାହିତ କରନ୍ତି ।

ବାସ୍ତବରେ ଜୋସେଫ କେନେଡି ଜଣେ ସାଧାରଣ ଲୋକ ନୁହଁନ୍ତି । ସେ ନିଜ ହାତରେ ନିଜକୁ ଗଢ଼ିଛନ୍ତି । ତିରିଶ ବର୍ଷ ବେଳକୁ ସେ କୋଟି କୋଟି ଟଙ୍କାର ମାଲିକ । ଅଳ୍ପ କେତେକ ବର୍ଷ ଭିତରେ ଆମେରିକାର ଶ୍ରେଷ୍ଠ ଧନୀମାନଙ୍କ ଭିତରୁ ଜଣେ । ରାଜନୀତି କ୍ଷେତ୍ରରେ ମଧ୍ୟ ସେ ବିଶେଷ ତତ୍ପର ।

ପ୍ରଥମେ ସେ ବଷ୍ଟନ ସହରରେ ତାଙ୍କ ବ୍ୟବସାୟ ଆରମ୍ଭ କରିଥିଲେ । ପରେ ତାଙ୍କର ବ୍ୟବସାୟ ବଢ଼ିଯିବାରୁ ସେ ୧୯୨୬ ମସିହାରେ ନ୍ୟୁୟର୍କ ସହରକୁ ଉଠିଆସିଲେ । ସେତେବେଳେ ତାଙ୍କ ଦ୍ୱିତୀୟ ପୁତ୍ର ଜାକକୁ ମାତ୍ର ଦଶବର୍ଷ ହୋଇଥିଲା ।

ଆଗେ ବଷ୍ଟନର ଲୋକେ ଭାରି ଆଇରିସ ବିରୋଧୀ ଥିଲେ । ଜୋସେଫଙ୍କ ବାପା ପାଟ୍ରିକ୍ କେନେଡି ସେମାନଙ୍କ ବିରୁଦ୍ଧରେ ଖୁବ୍ ଲଢ଼ାଇ କରି ଶେଷରେ ବଷ୍ଟନର ନେତା ହେଲେ । ପୁଣି ସେଇ ବିରୋଧୀଭାବ ଯୋଗୁଁ ସେ ବଷ୍ଟନ ଛାଡ଼ି ନ୍ୟୁୟର୍କ ଚାଲିଗଲେ । ସେ ପିଲାମାନଙ୍କର ଯତ୍ନନେବାକୁ ପଛଉପଦ ହେଉ ନଥିଲେ ।

ଜୋସେଫ କେନେଡି ତାଙ୍କ ପିଲାମାନଙ୍କୁ ଯେମିତି କଠିନ ଶୃଙ୍ଖଳା ଶିକ୍ଷା ଦେଉଥିଲେ, ପ୍ରତ୍ୟେକ କଥାରେ ପ୍ରତିଯୋଗିତା କରିବାପାଇଁ ମଧ୍ୟ ଉତ୍ସାହ ପ୍ରଦାନ କରୁଥିଲେ ।

ତାଙ୍କ ଘରେ ବହୁତ ପଇସା ଥିଲା । ଏଣୁ ପଇସା ଯୋଗୁ ପିଲାମାନେ ଯେମିତି ନଷ୍ଟ ନ ହୁଅନ୍ତି ସେଥିପ୍ରତି ବାପା ମା'ଙ୍କର ଦୃଷ୍ଟିଥିଲା । ତାଙ୍କ ମା' ଶ୍ରୀମତୀ ରୋଜ କହନ୍ତି, ଯେକୌଣସି ସୁଯୋଗ ଆସିଲେ, ତାକୁ ଯେମିତି ନ ଛାଡ଼ିବେ, ସେଥିପାଇଁ ପିଲାମାନଙ୍କୁ ବରାବର ଶିକ୍ଷା ଦିଆଯାଉଥିଲା ଓ ସାଇପଡ଼ିଶା ପିଲାଙ୍କ ଅପେକ୍ଷା ବେଶୀ ପଇସା ଖର୍ଚ୍ଚ କରିବାପାଇଁ ପିଲାମାନଙ୍କୁ ସୁଯୋଗ ଦିଆଯାଉ ନଥିଲା ।

କେନେଡ଼ି ପରିବାରର ପିଲାମାନଙ୍କୁ ଟଙ୍କା ପଇସା କେବେ ପୁରସ୍କାର ଦିଆଯାଉ-ନଥିଲା ; କିନ୍ତୁ ଜୋସେଫ କେନେଡ଼ି ତାଙ୍କର ପ୍ରତ୍ୟେକ ପିଲାଙ୍କୁ ପ୍ରତିଜ୍ଞା କରାଇଥିଲେ ଯେ, ୨୧ ବର୍ଷ ବୟସ ପର୍ଯ୍ୟନ୍ତ ସେମାନେ କେବେହେଲେ ମଦ କିମ୍ବା ସିଗାରେଟ ଖାଇବେ ନାହିଁ । ତା'ହେଲେ ୨୧ ବର୍ଷ ପୂର୍ଣ୍ଣ ହୋଇଗଲେ ପ୍ରତ୍ୟେକଙ୍କୁ ଦଶ ହଜାର ଟଙ୍କା ପୁରସ୍କାର ଦିଆଯିବ ।

୧୯୩୦ ମସିହାରେ ତେର ବର୍ଷ ବୟସରେ ପ୍ରଥମେ ଜ କଙ୍କୁ ଘର ଛାଡ଼ି ଯିବାକୁ ହେଲା । କନେକ ଟିକଟ ମିଲ୍ଡଲ ଟେଫୋର୍ଡ ସ୍କୁଲରେ ତାଙ୍କର ପଢ଼ିବାର କଥା । ଯେଉଁ ପରିବାରରେ ସେ ଏତେ ସ୍ନେହ ଆଦରରେ ଥିଲେ, ତାଙ୍କୁ ଆଜି ତାହା ଛାଡ଼ିବାକୁ ହେଲା ।

## ସ୍କୁଲ ଶିକ୍ଷା

କାଣ୍ଟରବରୀ ସ୍କୁଲରେ ନାମ ଲେଖାଇଲା ପରେ ସେ ନିଜକୁ ଖୁବ୍ ଏକାକୀ ମନେକଲେ ; ମାତ୍ର ଏଇ ସ୍କୁଲକୁ ସେ ଭଲ ପାଉ ନଥିଲେ । ୧୯୩୦ ମସିହାରେ ସେ ଇଷ୍ଟର ଛୁଟିରେ ଘରକୁ ଆସିବା ପରେ ତାଙ୍କର ପେଟମରା ରୋଗ ଆରମ୍ଭ ହୋଇ-ଯିବାରୁ ସେ ଆଉ ସ୍କୁଲକୁ ଫେରିପାରି ନଥିଲେ ।

ଏହାପରେ ସେ ଆଉ କାଣ୍ଟରବରୀ ସ୍କୁଲକୁ ନଯାଇ ବଡ଼ଭାଇ ଜୋଙ୍କ ସାଙ୍ଗରେ ଚୋଟ୍ ସ୍କୁଲରେ ଯୋଗଦେଲେ । ଚୋଟ କନେକ୍ଟିକଟ୍ ରାଜ୍ୟର ଗୋଟିଏ ବଢ଼ିଆ ସ୍କୁଲ ; କିନ୍ତୁ କାଣ୍ଟରବରୀ ସ୍କୁଲପରି ତାହା କାଥଲିକ ସ୍କୁଲ ନୁହେଁ । ଜୋସେଫ କେନେଡ଼ି ଚାହୁଁଥିଲେ ତାଙ୍କ ପିଲାମାନେ କୌଣସି କାଥଲିକ ସ୍କୁଲରେ ନପଢ଼ି ଏହିପରି ଏକ ସାଧାରଣ ସ୍କୁଲରେ ପଢନ୍ତୁ । ତା'ହେଲେ ସେମାନେ ନାନା ପ୍ରକାର ପିଲାଙ୍କ ସାଙ୍ଗରେ ମିଶିପାରିବେ, ଏହାଦ୍ୱାରା ଭବିଷ୍ୟତରେ ରାଜନୀତିରେ ଯୋଗଦେବାପାଇଁ ତାଙ୍କୁ ସୁବିଧା ହେବ । ଯଦିଓ ଚୋଟ୍ କାଥଲିକ ସ୍କୁଲ ନୁହେଁ, ତଥାପି ସେମାନେ ତାଙ୍କର ଧର୍ମ ଓ ରୀତିନୀତି ସବୁ ଠିକ୍ ରଖିଥିଲେ ।

ସ୍କୁଲରେ ସେ ଖେଳରେ ସମସ୍ତଙ୍କ ଆଗରେ ଥିଲେ । ହେଲେ ପାଠରେ ସେ ଆଗେଇ ପାରି ନଥିଲେ । ଇତିହାସ ଏବଂ ଇଂରାଜୀ ତାଙ୍କର କୌଣସି ପ୍ରକାର ଚଳି-ଯାଉଥିଲା ; ମାତ୍ର ଲାଟିନ ଭାଷା ତାଙ୍କୁ ଆଦୌ ଆସୁ ନଥିଲା । କେମେଷ୍ଟ୍ରି, ବାଇଓଲୋଜି ବି ତାଙ୍କୁ ଭଲ ଲାଗୁ ନଥିଲା ।

ମାତ୍ର ବାପାଙ୍କର ଚିଠିଟିଏ ତାଗିଦ ଯୋଗୁଁ ସେ ନିଜର ପୂରା ସମୟ ପାଠ-ପଢ଼ାରେ ମନୋନିବେଶ କଲେ । ନିଜର ଗଭୀର ଚେଷ୍ଟାଯୋଗୁଁ ସେ ୧୯୩୫ ମସିହାରେ ଚୋଟ୍ ସ୍କୁଲରୁ ପାଶକଲେ । ସେତେବେଳେ ସେମାନଙ୍କ ସାଙ୍ଗସାଥୀମାନେ ପ୍ରକାଶ କରିଥିଲେ ଯେ, "ଜାକ ଜୀବନରେ ଜଣେ ବଡ଼ଲୋକ ହେବ ।"

## ମାଂଦା ବଜାର

୧୯୨୯ ମସିହା ଅକ୍ଟୋବର ମାସ । ଜାକ୍ ସେତେବେଳକୁ ଖୁବ୍ ପିଲା । ବୟସ ମାତ୍ର ୧୨ ବର୍ଷ । ସେଇ ବର୍ଷ ହଠାତ୍ ଆମେରିକାରେ ଜିନିଷପତ୍ର ଦରଦାମ୍ ସବୁ କମିଗଲା । ବଜାର ଏକଦମ୍ ମାଂଦା ପଡ଼ିଗଲା । ୱାଲ୍ ଷ୍ଟ୍ରିଟରେ ଯେଉଁଦିନ ଏକଥା ଘୋଷଣା କରାଗଲା, ସେଦିନ ଥାଏ ଶୁକ୍ରବାର । ୱାଲ୍ ଷ୍ଟ୍ରିଟର ଲୋକେ ଏହାକୁ କଳା ଶୁକ୍ରବାର କହନ୍ତି ।

ମାଂଦା ବଜାର ଜଣାପଡ଼ିଲା ମାତ୍ରେ ଲୋକଙ୍କର କୋଟି କୋଟି ଟଙ୍କାର ସମ୍ପତ୍ତି ଉଡ଼ିଗଲା । ଅନେକ ବ୍ୟାଙ୍କ ଭାଙ୍ଗି ନଷ୍ଟ ହୋଇଗଲା । ୱାଲ ଷ୍ଟ୍ରିଟ୍‌ର ଅନେକ ଲୋକ ଫକଡ଼ ହୋଇଯିବା ଭୟରେ ଆତ୍ମହତ୍ୟା କରି ମଲେ । ଚୂଷା ମୂଲିଆଠାରୁ ଆରମ୍ଭ କରି ଡାକ୍ତର, ଇଞ୍ଜିନିୟର ସମସ୍ତେ ଦେଖିଲେ, ସେମାନେ ବ୍ୟାଙ୍କରେ ଯେତେ ପଇସା ଖଟାଇ ଥିଲେ, ସବୁ ଉଡ଼ିଯାଇଛି । ଲକ୍ଷ ଲକ୍ଷ ଲୋକ ବେକାର ହୋଇ ବୁଲିଲେ ।

୧୯୨୯ ପରେ ପରେ ଆମେରିକାରେ କି ପ୍ରକାର ଭୟଙ୍କର ଅବସ୍ଥା ହୋଇ-ଥିଲା, ସେ କଥା ଆଜି କଳ୍ପନା କରିବା କଷ୍ଟ । ସାହାଯ୍ୟ କେନ୍ଦ୍ରମାନଙ୍କରୁ କପେ ସୁପ ଓ ଫଳ ପାଇବା ପାଇଁ ଘଣ୍ଟା ଘଣ୍ଟା ଧରି ଲୋକେ ଷ୍ଟେକ ଉପରେ ଧାଡ଼ି ବାନ୍ଧି ଛିଡ଼ା ହୋଇ ରହୁଥିଲେ । ଅଳ୍ପ କେଇଟା ଟଙ୍କାକୁ ଯଦି କାହାକୁ କେଉଁଠି ଚାକିରିଟାଏ ମିଳିଯାଉଥିଲା, ତେବେ ସେ ନିଜକୁ ଭାଗ୍ୟବାନ ମନେ କରୁଥିଲା ।

କିନ୍ତୁ ମାନ୍ଦାବଜାର ଯୋଗୁ କେନେଡ଼ି ପରିବାରର କୌଣସି କ୍ଷତି ହୋଇ ନ ଥିଲା । ବଜାର ମାନ୍ଦା ହେବାର କେତେ ମାସ ପୂର୍ବରୁ ଜୋସେଫ୍ କେନେଡ଼ି ତାଙ୍କର ସବୁ ଟଙ୍କା ଉଠାଇ ଆଣିଥିଲେ । ସେ ଟଙ୍କା ଉଠାଇଲାବେଳେ ଅନେକ ତାଙ୍କୁ ମନା କରୁଥିଲେ । କାରଣ ସେତେବେଳେ ଷ୍ଟକ ବଜାର ଖୁବ୍ ବଢ଼ୁଥିଲା । ରାତାରାତି ଲୋକେ ଧନୀ ହୋଇ ଯାଉଥିଲେ । କିନ୍ତୁ ହଠାତ୍ ଯେତେବେଳେ ବଜାର ମାନ୍ଦା ପଡ଼ିଗଲା, ଯେଉଁମାନେ ଟଙ୍କା ଲଗାଣ କରିଥିଲେ, ସେମାନଙ୍କର ସବୁ ସମ୍ପତ୍ତି ହଠାତ୍ ଉଡ଼ିଗଲା, ଅଥଚ ଜୋସେଫ ଆଗରୁ ସତର୍କ ହୋଇ ଯାଇଥିବାରୁ ତାଙ୍କର କୌଣସି କ୍ଷତି ହୋଇ ନ ଥିଲା ।

୧୯୩୦ ବେଳକୁ ଦେଶର ଅବସ୍ଥା ଆହୁରି ଖରାପ ହୋଇଯାଇଥିଲା । କିନ୍ତୁ କେନେଡ଼ିଙ୍କର କିଛି ହୋଇ ନ ଥିଲା । ହାତରେ ତାଙ୍କର ପଇସା ଯେମିତି ଥିଲା, ସମୟ ବି ସେମିତି ଥିଲା । ରାଜନୀତି କ୍ଷେତ୍ରରେ ତାଙ୍କର ଜଣେ ବନ୍ଧୁ ଥିଲେ ଫ୍ରାଙ୍କଲିନ୍ ଡି ରୁଜଭେଲ୍ଟ । ଦିନକୁ ଦିନ ସେ ଖୁବ୍ ଉପରକୁ ଉଠୁଥିଲେ । ୧୯୩୨ ମସିହାରେ ଡେମୋକ୍ରାଟିକ୍ ଦଳ ତାଙ୍କୁ ଆମେରିକାର ପ୍ରେସିଡେଣ୍ଟ ପଦ ପାଇଁ ଛିଡ଼ା କରାଇଲେ । ଜୋସେଫ୍ କେନେଡ଼ି ଏଇ ନିର୍ବାଚନରେ ଜଣେ ପ୍ରଧାନ ସହାୟକ ଥିଲେ । ଅନେକ ସମୟରେ ତାଙ୍କ ସାଙ୍ଗମାନଙ୍କ ଆଗରେ ପରିହାସ କରି କହୁଥିଲେ, "ଏହି ନିର୍ବାଚନରେ ରୁଜଭେଲ୍ଟଙ୍କର ଯେତେ ସାଙ୍ଗ ସାଥୀ ଅଛନ୍ତି, ସେମାନଙ୍କ ଭିତରୁ ମୋରି ପାଖରେ ଅଳ୍ପ ଯାହା କିଛି ଦଶ ପଚିଶ ଟଙ୍କା ଅଛି," ନଚେତ୍ କୌଣସି ଧନୀଲୋକ ଡେମୋକ୍ରାଟିକ୍ ଦଳରେ ନଥିଲେ । ଆମେରିକାର ମନ୍ଦା ବଜାରକୁ ଉଠାଇବାପାଇଁ ରୁଜଭେଲ୍ଟ ଯେଉଁ ନୂଆ କଳ୍ପନା କରିଥିଲେ, 'ସେଥିପାଇଁ ଆମେରିକାର ସବୁ ଧନୀ ଲୋକ ଓ ଡେମୋକ୍ରାଟିକ୍ ଦଳର ଲୋକ ତାଙ୍କୁ ଭାରି ଘୃଣା କରୁଥିଲେ । କେନେଡ଼ି ଏକମାତ୍ର ଧନୀ ଲୋକ, ଯିଏ କି ତାଙ୍କୁ ସାହାଯ୍ୟ କରୁଥିଲେ ଓ ତାଙ୍କ ନିର୍ବାଚନ ଖର୍ଚ୍ଚ ପାଇଁ ପଚ୍ଚିଶ ହଜାର ଟଙ୍କା ସାହାଯ୍ୟ କରିଥିଲେ ।

୧୯୩୨ ନଭେମ୍ବର ମାସରେ ରୁଜଭେଲ୍ଟ ପ୍ରେସିଡେଣ୍ଟ ନିର୍ବାଚିତ ହେଲେ ଓ ୧୯୩୩ ମାର୍ଚ୍ଚରେ ପ୍ରେସିଡେଣ୍ଟ ଭାବରେ ଶପଥ ଗ୍ରହଣ କଲେ । ସେତେବେଳକୁ ଜାକ୍-ଚୋଟ ସ୍କୁଲରେ ପଢୁଥାଆନ୍ତି । ତା'ର ଠିକ୍ ବର୍ଷକ ପରେ ରୁଜଭେଲ୍ଟ ତାଙ୍କର ବନ୍ଧୁ ଜୋସେଫ କେନେଡିଙ୍କ ପାଇଁ ଗୋଟାଏ ନୂଆ ଚାକିରି ସୃଷ୍ଟି କଲେ । ଚାକିରିଟା ହେଲା — "ଏକ୍ସଚେଞ୍ଜ କମିଶନ" ଓ ସେଥିରେ କାମ ହେଲା, ଯେଉଁ ଷ୍ଟକ୍ ବଜାର ମାନ୍ଦା ହୋଇ ଯାଇଥିଲା ତାକୁ ପୁଣି ଭଲ ଭାବରେ ସଜାଡ଼ିବା ।

କେନେଡିଙ୍କ ଚାକିରି ଲାଗି ରୁଜଭେଲଟଙ୍କୁ ଲୋକେ ନାନା ଭାବରେ ସମାଲୋଚନା କଲେ, କେନେଡିଙ୍କ ପରି ଜଣେ ପୁଞ୍ଜିପତିଙ୍କୁ ୱାଲ ଷ୍ଟ୍ରିଟର ଷ୍ଟକ ବଜାର ଦାୟିତ୍ୱ ଦେବା ଉଚିତ ନୁହେଁ ବୋଲି କହିଲେ । ଖବରକାଗଜମାନଙ୍କରେ ସେ ବିଷୟରେ କଡ଼ାକଡ଼ା ସମ୍ପାଦକୀୟ ବାହାରିଲା । ଷ୍ଟକ ବଜାରରେ ଯେ ପ୍ରକାର ଜୁଆଚୋରୀ ଓ ଠକାମି ଚାଲିଥିଲା, ସେଥିପାଇଁ ଭାରି କଡ଼ା କଟକଣା ଦରକାର ବୋଲି ଲୋକେ ପାଟିତୁଣ୍ଡ କରୁଥିଲେ । କିନ୍ତୁ ଜୋସେଫ କେନେଡି ମହାଚାଲାକ ଲୋକ । ସେ ଏକମାତ୍ର ଲୋକ, ଯେ କି ଷ୍ଟକ ବଜାରର ଅବସ୍ଥା ଆଗରୁ ଜାଣିପାରି ଟଙ୍କା ପଇସ ନେଇ ଉଠାଇ ନେଇ-ଥିଲେ । ଏବେ ଏହି ଚାକିରିରେ ରହି ବ୍ୟବସାୟୀମାନଙ୍କର ସବୁପ୍ରକାର ଠକାମୀ ଓ ଜାଲିଆତି ଜାଣିପାରିଲେ ।

ଏହାପରେ କେନେଡିଙ୍କୁ ସମୁଦ୍ର ବ୍ୟବସାୟର କମିଶନ ପଦ ମିଳିଲା । ଏଥିରେ ମଧ୍ୟ ସେ ଚମତ୍କାର କାମ କଲେ ।

ସେତେବେଳକୁ ଜ୍ୟାକ୍ କେନେଡି କନେକ ଟିକେଟର ଚୋଟ୍ ସ୍କୁଲରେ ପଢୁ-ଥାଆନ୍ତି । ପ୍ରତିଦିନ ନ୍ୟୁୟର୍କ ଟାଇମ୍ସ କାଗଜ ପଢିଲାବେଳେ ତାଙ୍କ ବାପା କିପରି ପରିଶ୍ରମ କରନ୍ତି, ସେ ବିଷୟରେ ଅନେକ ଖବର ପାଇଯାଆନ୍ତି । ଏ ସବୁକୁ ଦେଖି ଅର୍ଥନୀତି ଓ ରାଜନୀତି ପ୍ରତି ଜାକ୍ଙ୍କର ଆକର୍ଷଣ ଦିନକୁ ଦିନ ବଢ଼ିଲା ।

**ହାର୍ଭାର୍ଡ**

ଜାକ୍ ସ୍କୁଲ ଛାଡ଼ି କଲେଜକୁ ଯିବା ପୂର୍ବରୁ ତାଙ୍କ ବାପା ତାଙ୍କୁ ସେହି ବର୍ଷ ଗ୍ରୀଷ୍ମଛୁଟିରେ ଲଣ୍ଡନ ପଠାଇବାକୁ ଚାହିଁଲେ । ସେଠି ପୃଥିବୀ ବିଖ୍ୟାତ ସାମ୍ୟବାଦୀ ଅଧ୍ୟାପକ ହାରୋଲଡ୍ ଲାସ୍କିଙ୍କ ପାଖରେ ଲଣ୍ଡନ ସ୍କୁଲରେ ତାଙ୍କର ଅର୍ଥଶାସ୍ତ୍ର ପଢିବା କଥା । ତେଣୁ ଅଠର ବର୍ଷ ବୟସରେ ଯୁବକ କେନେଡି ଯେଉଁ ସ୍କୁଲ ଛାଡ଼ି ଏକ ନୂଆ ସଂସାର ଦେଖିବାପାଇଁ ସିଧା ୟୁରୋପ ଅଭିମୁଖେ ବାହାରିଲେ ।

ଲଣ୍ଡନରେ ଜାକ୍ ଅନେକ ନୂଆ କଥା ଶୁଣିଲେ ଏବଂ ଅନେକ ନୂଆ ଲୋକ ଦେଖିଲେ । ସେତେବେଳେ ଲଣ୍ଡନ ବିଶାଳ ବ୍ରିଟିଶ ସାମ୍ରାଜ୍ୟର ରାଜଧାନୀ ଥିଲା । ସେଠି ପୃଥିବୀର ଭିନ୍ନ ଭିନ୍ନ ଜାଗାରୁ କେତେ ଜ୍ଞାନୀ, କେତେ ବିପ୍ଳବୀ, କେତେ ଲେଖକ, କେତେ ଅର୍ଥନୀତିଜ୍ଞ ଆସି ରୁଣ୍ଡ ହେଉଥିଲେ । ଏହି ପ୍ରକାର ଅନେକ ଲୋକଙ୍କ ସହିତ ସାକ୍ଷାତ କରିବା ପାଇଁ ଜାକ୍ଙ୍କୁ ସେଠି ସୁବିଧା ମିଳିଲା ।

କିନ୍ତୁ ଦୁର୍ଭାଗ୍ୟର କଥା, ତା' ପୂର୍ବବର୍ଷ ଜୋଲାସ୍କିଙ୍କ ପାଖରେ ରହି ଯାହା ଶିଖିଥିଲେ, ଜାକ୍ ତାହା ଶିଖି ପାରିଲେ ନାହିଁ । କାରଣ ଲଣ୍ଡନରେ ଅନେକ ଦିନ ପର୍ଯ୍ୟନ୍ତ ତାଙ୍କୁ କାମଳ ରୋଗ ହେଲା, ସେ ରୋଗୀ ତାଲିକାରେ ରହିଲେ ।

ପ୍ରିନ୍ସଟନରେ ପହଞ୍ଚି ବିଶ୍ୱବିଦ୍ୟାଳୟର ଚମତ୍କାର ପରିବେଶ ଦେଖି ସେ ମୁଗ୍ଧ ହୋଇଗଲେ । ପୂର୍ବ ସାଥୀ ଲେମ ବିଲିଙ୍ଗଲ ଓ ରାଲଫ ହର୍ଟନଙ୍କ ସଙ୍ଗରେ ଏକା ବସାରେ ରହି ସଙ୍ଗେ ସଙ୍ଗେ ପଢାପଢି ଆରମ୍ଭ କରିଦେଲେ ।

ସବୁ ଭଲରେ ଚାଲିଥିଲା । ଦୁଇ ମାସ ପରେ ହଠାତ୍ ପୁଣି ଥରେ ତାଙ୍କୁ କାମଳ ରୋଗ ଧରିଲା । ତେଣୁ ବିଶ୍ୱବିଦ୍ୟାଳୟ ଛାଡ଼ି ଚାଲିଆସିବା ବ୍ୟତୀତ ତାଙ୍କର ଅଭ ଭାଟ ନ ଥିଲା । ସ୍ୱାସ୍ଥ୍ୟ ଫେରି ପାଇବା ପାଇଁ ସେ ଯାଇଁ ଆରିଜୋନାରେ ରହିଲେ । ତେଣୁ ଦେହ ଭଲ ହେବା ପରେ ପ୍ରିନ୍ସଟନ୍‌କୁ ଫେରିଯାଇ ସାଙ୍ଗ ପିଲାଙ୍କର ବର୍ଷେ ତଳେ ପଢ଼ିବା ଅପେକ୍ଷା ହାର୍ଭାର୍ଡରେ ପଢ଼ିବା ପାଇଁ ସେ ଯାଇଁ ନାଁ ଲେଖାଇଲେ । ସେହି ବର୍ଷ ଗଲା ତାଙ୍କର ହାର୍ଭାର୍ଡ ଛାଡ଼ିବା କଥା ।

ତେଣୁ ୧୯୩୬ ମସିହା ସେପ୍‌ଟେମ୍ବରରେ ଜାକ ତାଙ୍କ ଜନ୍ମସ୍ଥାନ ବଷ୍ଟନ ସହରକୁ ଫେରି ଆସିଲେ । ପ୍ରାୟ ଆଠ ବର୍ଷ ହେଲା କେନେଡ଼ି ପରିବାର ବଷ୍ଟନ ଛାଡ଼ି ନ୍ୟୁୟର୍କର ବ୍ରଙ୍କସଭିଲ୍‌କୁ ଚାଲି ଯାଇଥିଲେ ।

ମାତ୍ର ଏଇ ସମୟରେ ହାର୍ଭାର୍ଡର ବାତାବରଣ ଖୁବ୍ ସରଗରମ ହୋଇ-ଉଠିଲା । ଏକରେ ମାନ୍ଦା ବଜାର ପୂର୍ବପରି ଦେଶରେ ଚାଲିଥାଏ । ଦୁଇରେ ଏଇ ମାନ୍ଦା ବଜାରକୁ ସୁଧାରିବା ପାଇଁ ରୁଜଭେଲ୍‌ଟ "ନିଉଡ଼ିଲ" ବ୍ୟବସ୍ଥା କରୁଥାନ୍ତି । ତିନିରେ ପୃଥିବୀରେ ଏକ ନୂଆ ବିପଦ ଘନେଇ ଆସୁଥାଏ । ହିଟଲର ଓ ତାଙ୍କ ନାଜିବାଦ ପୃଥିବୀ ସ୍ୱାଧୀନତାକୁ ବିପନ୍ନ କରିବାକୁ ବସିଥାଏ । ତେଣୁ ହାର୍ଭାର୍ଡରେ ଛାତ୍ରମାନେ ବଡ଼ ଉଦ୍‌ବିଗ୍ନ ଅବସ୍ଥାରେ ସବୁ ଘଟଣା ଲକ୍ଷ୍ୟ କରୁଥାନ୍ତି ।

ଏପରି ପରିସ୍ଥିତିରେ ବାମପନ୍ଥି ଦକ୍ଷିଣପନ୍ଥୀ, ମଧ୍ୟମପନ୍ଥୀ—ଏହିପରି ଅନେକ ରାଜନୈତିକ କ୍ଲବସବୁ ଖୋଲିଗଲା । ଛାତ୍ରମାନେ ବିଶେଷ ଭାବରେ ଉଦ୍‌ବିଗ୍ନ ହୋଇ ଉଠିଲେ, ଏପରି କି ପୃଥିବୀ ପରିସ୍ଥିତି ବିରୁଦ୍ଧରେ ବିକ୍ଷୋଭ ପ୍ରଦର୍ଶନ କରି ଛାତ୍ରମାନେ ଶୋଭାଯାତ୍ରା କଲେ ।

କିନ୍ତୁ ଆଶ୍ଚର୍ଯ୍ୟର କଥା, ହାର୍ଭାର୍ଡରେ ଛାତ୍ରମାନେ ଯେତେବେଳେ ଏମିତି ଦଳ ଦଳ ହୋଇ ରାଜନୀତିରେ ମାତିଥିଲେ, ଜାକ୍ କେନେଡ଼ି ସେତେବେଳେ କୌଣସି ଦଳରେ ଯୋଗ ନ ଦେଇ ଚୁପ୍‌ଚାପ ରହିଲେ । ତାଙ୍କୁ ଯେଉଁଦିନ କେ.ଡ଼ି ଏ ବର୍ଷ ପୂରିଲା, ସେଇଦିନ ଟ୍ରଷ୍ଟ ଫଣ୍ଡରେ ଥିବା ତାଙ୍କ ବାପାଙ୍କ ଟଙ୍କାରୁ ତାଙ୍କୁ ପଚାଶ ଲକ୍ଷ ଟଙ୍କା ମିଳିଲା, କିନ୍ତୁ ହାର୍ଭାର୍ଡର କୌଣସି ସାଙ୍ଗସାଥୀମାନେ ଏକଥା ଜାଣିନଥିଲେ ।

## ୟୁରୋପରେ ଝଡ଼ଝଞ୍ଜା

ଜାକ୍ ହାର୍ଭାର୍ଡରେ ପଢୁଥିବାବେଳେ ତାଙ୍କ ବାପା ରାଜନୀତି କ୍ଷେତ୍ରରେ ଖୁବ୍ ଉପରକୁ ଉଠିଥିଲେ । ୧୯୩୭ ମସିହା ଶେଷବେଳକୁ ରାଷ୍ଟ୍ରପତି ରୁଜଭେଲଟ ତାଙ୍କ ବାପାଙ୍କୁ ଇଂଲଣ୍ଡର ରାଜଦୂତ ପଦରେ ନିଯୁକ୍ତ କଲେ । ଇଂଲଣ୍ଡର ରାଜଦୂତଙ୍କ ସମ୍ମାନ ବହୁତ ବେଶୀ । ଆମେରିକାର ଦୁଇଜଣ ଭୂତପୂର୍ବ ପ୍ରେସିଡେଣ୍ଟ ଜେମସ୍ ମନରୋ ଓ ଜନ୍ କ୍ୱିନ୍‌ସି ଆଡ଼ାମସ ମଧ୍ୟ ଦିନେ ଇଂଲଣ୍ଡର ରାଜଦୂତ ଭାବେ କାର୍ଯ୍ୟ କରିଥିଲେ ।

କେନେଡ଼ି ନିଜର ପରିବାର ନେଇ ଇଂଲଣ୍ଡ ଚାଲିଗଲେ । କେନେଡ଼ି ରାଜଦୂତ ହେବାପରେ ୧୯୩୮ ଗ୍ରୀଷ୍ମ ଛୁଟିରେ ଜାକ ତାଙ୍କ ପାଖକୁ ଗଲେ । ଇଂଲଣ୍ଡରେ ଜାକ ବୁଲି ବିଭିନ୍ନ ସମସ୍ୟା ସମ୍ପର୍କରେ ଜାଣିବାପାଇଁ ଚେଷ୍ଟାକଲେ ।

୧୯୩୯ ବସନ୍ତ ଋତୁରେ ଜାକ ତାଙ୍କ ବାପାଙ୍କଠାରୁ କେତେକ ଉପଦେଶ ନେଇ ପାରିସ ଚାଲିଗଲେ । ସେଠୁ ତାଙ୍କର ଆମେରିକାନ ରାଜଦୂତ ଉଇଲିୟମ ବୁଲିଟଙ୍କ

ନିର୍ଦ୍ଦେଶରେ କାମ କରିବାକଥା । ସେ ତାଙ୍କ କାର୍ଯ୍ୟ କରିଗଲେ । ସେହିବର୍ଷ ଗ୍ରୀଷ୍ମଋତୁରେ ସରକାରୀ କାର୍ଯ୍ୟରେ ତାଂକୁ ରୁଷ, ପୋଲଣ୍ଡ, ତୁର୍କୀ, ପାଲେଷ୍ଟାଇନରେ ବୁଲିବାକୁ ପଡ଼ିଲା ।

ଏଇ ବୁଲାବୁଲି ଭିତରେ କେନେଡ଼ି ଯାହା ଦେଖିଲେ ତାହାର ଟିକିନିଖି ବିବରଣୀ ସେ ନିଜ ବାପାଙ୍କ ପାଖକୁ ଲେଖି ଜଣାଇଦେଉଥିଲେ ।

ଏଇ ସମୟରେ ଯୁଦ୍ଧ ଆରମ୍ଭ ହୋଇଗଲା ।

## ଝଡପୂର୍ବରୁ ନିସ୍ତବ୍ଧତା

୧୯୪୦ ଗ୍ରୀଷ୍ମଋତୁରେ କେନେଡ଼ି ପରିବାରର ନଅଜଣଯାକ ଭାଇଭଉଣୀ ଶେଷଥର ପାଇଁ ଏକାଠି ହୋଇଥିଲେ । ତା'ର ଖୁବ୍ ଅଳ୍ପଦିନ ପରେ ଭୟଙ୍କର ବିଶ୍ୱଯୁଦ୍ଧ ଆରମ୍ଭ ହେବାକଥା । ଆମେରିକାକୁ ସେଥିରେ ଭାଗନେବାକୁ ପଡ଼ିବ ଓ କେନେଡ଼ି ପରିବାରର ଲୋକମାନଙ୍କୁ ମଧ୍ୟ ସେଥିରେ କାମ କରିବାକୁ ପଡ଼ିବ । ସେ ସମୟରେ ୟୁରୋପରେ ଏଣେ ଅନେକ ଦେଶ ଗୋଟିଗୋଟି ହୋଇ ହିଟଲରଙ୍କ ହାତରେ ପଡୁଥାଆନ୍ତି ଓ ତେଣେ ସୁଦୂର ପ୍ରାଚ୍ୟରେ ଜାପାନ ଏକ ବିରାଟ ସୈନ୍ୟବାହିନୀ ଗଢ଼ିବାରେ ଲାଗିଥାଏ ।

ଏପର୍ଯ୍ୟନ୍ତ କେନେଡ଼ି ପରିବାରର ଅଦମ୍ୟ ଶିଶୁଗୁଡ଼ିକ ଭଲଭାବେ ନାଁ କରିଯାଇଥିଲେ । ଜୋ ଜଣେ ବିବାଦାସ୍ପଦ ରାଜନୀତିଜ୍ଞ ଭାବରେ ଖୁବ୍ ନାଁ କରିସାରିଥିଲେ ଓ ଜାକ ଜଣେ ଖୁବ୍ ଜନପ୍ରିୟ ଲେଖକ ଭାବରେ ପରିଚିତ ହୋଇସାରିଥିଲେ । ଭଉଣୀ କ ଥଲୀନ ୱାସିଙ୍ଗଟନ୍ ଟାଇମସ୍ ହେରାଲଡ୍‌ରେ ଖବରକାଗଜ ଲୋକ ହିସାବରେ କାମ କରୁଥିଲେ ।

ଏହାପରେ ଜୋ ଉଡ଼ାଜାହାଜ କ୍ୟାଡେଟ ହିସାବରେ ନୌବାହିନୀରେ ଯୋଗଦେଲେ । ୧୯୪୨ରେ ଜାକ୍‌ଙ୍କୁ ପେଟ୍ରୋଲ ଟର୍ପେଡୋ ବୋଟ ସ୍କୁଲରେ ଟ୍ରେନିଂ ପାଇଁ ପଠାଗଲା ।

୧୯୪୩ ମସିହାରେ ଜାକ ସାନଫ୍ରାନସିସ୍କୋ ଛାଡ଼ି ଦକ୍ଷିଣ ପ୍ରଶାନ୍ତ ମହାସାଗରକୁ ଚାଲିଗଲେ । ସେଇଠି ସମୁଦ୍ର ଭିତରୁ ଜାପାନ ଉପରେ ଉଡ଼ାଜାହାଜ ଆକ୍ରମଣ ପାଇଁ ବନ୍ଦୋବସ୍ତ କରଯାଉଥିଲା । ଏଣୁ ତାଙ୍କୁ ୧୦୯ ନମ୍ବର ପି:ଟି: ବୋଟର ମୁଖ୍ୟକର୍ତ୍ତା ରୂପେ ନିଯୁକ୍ତି ମିଳିଥିଲା ।

## ଯୁଦ୍ଧ

ପିଃ ଟି: ୧୦୯ ରେ ବହୁତ କାମହେଲା । ତା'ର ମାଲିକ ଜୁନିୟର ଲେଫ୍‌ଟନାଣ୍ଟ ଜନ: ଏଫ୍ କେନେଡ଼ି ତାଂକୁ ଧରି ଦିନରାତି ସଲମନ ଦ୍ୱୀପ ଚାରିପାଖ ପହରା ଦେବାକୁ ଲାଗିଲେ । ଜାପାନୀ ସୈନ୍ୟମାନଙ୍କ ପାଇଁ ଖାଦ୍ୟପଦାର୍ଥ ବୋହୁଥିବା ଛୋଟ ଛୋଟ ବୋଟଗୁଡ଼ାକୁ ସେ ବୁଡ଼ାଇ ପକାଇଲେ ଓ କୂଳରେଥିବା ଜାପାନୀ ଛାଉଣୀମାନଙ୍କୁ ଲକ୍ଷ୍ୟକରି ଗୁଳିବର୍ଷା କଲେ ।

୧୯୪୩ ଅଗଷ୍ଟ ଦୁଇ ତାରିଖ । ଘନଘୋର ଅନ୍ଧାର, ରାତି ଦୁଇଟା, ନିଜ କ୍ୟାଂପ୍‌ଠାରୁ କେନେଡ଼ି ପ୍ରାୟ ୪୦ ମାଇଲ ଦୂରରେ ସେଇରାତି ଏବଂ ସେଇ ମୁହୂର୍ତ୍ତରୁ କେନେଡ଼ିଙ୍କ ଜୀବନର ଭୟଙ୍କର ଯୁଦ୍ଧ ଆରମ୍ଭ ହୋଇଗଲା । ହଠାତ୍ ଗୋଟାଏ ଜାପାନୀ ଜାହାଜ ତାଙ୍କ ଆଡ଼କୁ ମାଡ଼ିଆସିଲା । ସେ ବିପଦ ଘଣ୍ଟ ବଜାଇ କ୍ୟାଂପ୍‌କୁ ବେତାର ବାର୍ତ୍ତା ଦେବାପାଇଁ ଲାଗିଲେ । ରାତ ସେତେବେଳକୁ ଦୁଇଟା ବାଇନୋକୁଲାର ଧରି ଅନ୍ଧାର ଭିତରେ ଶତ୍ରୁ ଅନୁସନ୍ଧାନ କରୁଥିଲେ । ପ୍ରବଳ ବେଗରେ ଜାପାନ ଜାହାଜ

ଆଘି ତାଙ୍କ ବୋଟରେ ପିଟିହୋଇ ବୋଟଟିକୁ ଦୁଇଖଣ୍ଡ କରିଦେଲା । ବୋଟ୍‌ଟି ସିନା ଜଳିଗଲା, ହେଲେ କେନେଡି ଏବଂ ଅଳ୍ପ କେତେଜଣ କର୍ମଚାରୀ ରକ୍ଷା ପାଇଗଲେ ।

ରକ୍ଷା ସିନା ପାଇଗଲେ ହେଲେ ଯିବେ କୁଆଡେ ? ଯୁଆଡେ ଚାହିଁଲେ ସବୁଆଡେ କେବଳ ଜାପାନୀ ସୈନ୍ୟମାନେ ଛାଉଣୀ ପକାଇ ରହିଥାନ୍ତି । ତେବେ ଯାହାହେଉ ସେ ବହୁ ପରିଶ୍ରମ କରି ପ୍ରାୟ ୩୦ ମାଇଲ ସମୁଦ୍ର ପାରି ହୋଇ ନିଜର ସାଙ୍ଗ ସାଥୀମାନଙ୍କୁ ଧରି ଗୋଟିଏ ନିର୍ଜନ ଦ୍ୱୀପରେ ପହଞ୍ଚିଲେ ।

ସେହି କ୍ୟାମ୍ପର ଲୋକମାନେ ଭାବିଲେ ପି:ଟି: ବୋଟ-୧୦୯ର ସବୁଯାକ ସୈନ୍ୟ ନିଶ୍ଚୟ ଯୁଦ୍ଧରେ ମରିଯାଇଛନ୍ତି । ଏଣୁ ସେମାନେ ସେ ସମ୍ପର୍କରେ ଆଉ କୌଣସି ଖୋଜାଖୋଜି ନ କରି କେନେଡିଙ୍କ ଘରକୁ ଖବର ପଠାଇଦେଲେ ।

## ଜୋଙ୍କର ମୃତ୍ୟୁ

୧୯୪୨ ମସିହା ପ୍ରଥମ କେତେମାସ ଜାକ ଟେଲସି ନୌବାହିନୀ ଡାକ୍ତର-ଖାନାରେ ରହି ସମୟ କଟାଇଲେ । ସେହି ବର୍ଷ ଜୋ ୟୁରୋପରେ ଉଡ଼ାଜାହାଜ ବାହିନୀରେ ରହି ଯୁଦ୍ଧ କରୁ କରୁ ମୃତ୍ୟୁ ମୁଖରେ ପଡି ନିହତ ହେଲେ ।

ଜାକ୍ ଯେମିତି ପ୍ରଶାନ୍ତ ମହାସାଗରରେ ପ୍ରଥମ ଦଫା କାମ ସାରି ଆଉ ଥରେ କାମ କରିବା ପାଇଁ ଚାହିଁଥିଲେ, ଜୋ ମଧ୍ୟ ସେମିତି ଅଟଲାଣ୍ଟିକ୍ ମହାସାଗରରେ ଥରେ ନିଜର କର୍ତ୍ତବ୍ୟ ସାରି ଆଉ ଥରେ ସେହି କାର୍ଯ୍ୟ କରିବା ପାଇଁ ନିଜଆଡୁ ପ୍ରସ୍ତାବ ଦେଲେ । ଦ୍ୱିତୀୟ ଥର କାମ ସାରି ସେ ଠିକ୍ ଘରକୁ ବାହାରୁଛନ୍ତି, ଏଇ ସମୟରେ ସରକାରଙ୍କର ପୁଣି ଗୋଟିଏ ଗୁପ୍ତକାମ ପାଇଁ ଜଣେ ଭଲ ବିମାନଚାଳକ ଦରକାର ହେଲେ । ସେହି ଗୁପ୍ତ କାମର ନାଁ ଥିଲା "ପ୍ରୋଜେକ୍‌ଟ ଆନଭିଲ" । ଇଂଲଣ୍ଡ ଉପରେ ଜର୍ମାନୀମାନେ ଯେଉଁ ଆତଙ୍କ ସୃଷ୍ଟି କରିଥିଲେ, ତାକୁ ସଂପୂର୍ଣ୍ଣ ଶେଷକରିବା ଏହି ପ୍ରୋଜେକ୍‌ଟର ଥିଲା ଲକ୍ଷ୍ୟ । ୧୯୪୪ ମସିହା ବେଳକୁ ୟୁରୋପରେ ଯୁଦ୍ଧ ପ୍ରାୟ ସରି ଆସୁଥିଲା । ହିଟଲର ଯେତେବେଳେ ଦେଖିଲେ ଯେ ତାଙ୍କ ସୈନ୍ୟମାନେ ନର୍ମାଣ୍ଡିରେ ମିତ୍ର ସୈନ୍ୟମାନଙ୍କ ଆଗରେ ହଟି ପଳାଉଛନ୍ତି, ସେତେବେଳେ ସେମାନେ ଏକ ଭୟଙ୍କର ଅସ୍ତ୍ର ପ୍ରୟୋଗ କଲେ, ତା'ର ନାମ ଥିଲା — "ଭି-୨ ରକେଟ୍ ।",

ଜର୍ମାନୀର ଏଇ ଭୟଙ୍କର ଅସ୍ତ୍ର ବିରୁଦ୍ଧରେ ଆଉ କାହାରି କିଛି ଉପାୟ ନଥିଲା । ଏହା ଏତେ ଜୋରରେ ଏତେ ଉପରେ ଉଡେ ଯେ, କେହି ତାକୁ କିଛି କରିପାରନ୍ତି ନାହିଁ । ଏହିସବୁ ରକେଟ ଅତର୍କିତ ଭାବରେ ଇଂଲଣ୍ଡ ଉପରେ ଏମିତି ଓଡାଡି ହୋଇ-ପଡ଼ିଲା ଯେ, ଧାଡ଼ି ଧାଡ଼ି ଘରସବୁ ଧୂଳିସାତ୍ ହୋଇ ଭୂଇଁରେ ମିଶିଗଲା ।

ଯେଉଁ ଜାଗାରୁ ରକେଟ ଆସୁଥିଲା, ତାକୁ ନଷ୍ଟ କରିବା ଛଡ଼ା ରକେଟକୁ ବନ୍ଦ କରିବାର ଅନ୍ୟ କୌଣସି ଉପାୟ ନଥିଲା ; କିନ୍ତୁ ନର୍ମାଣ୍ଡିରୁ ଯେଉଁ ଜାଗାରୁ ରକେଟ ଆସୁଥିଲା, ସେଟା ଏତେ ବିରାଟ ଓ ଲୁହା ସିମେଣ୍ଟରେ ଏମିତି ମଜବୁତ ଭାବରେ ତିଆରି ହୋଇଥିଲା ଯେ, ଉପରୁ ବମ୍ ପକାଇ ତାକୁ ନଷ୍ଟ କରିବା କେବେ-ହେଲେ ସମ୍ଭବପର ନଥିଲା ।

ଏଣେ ମିତ୍ର ଶକ୍ତିମାନେ ଗୋଟିଏ ନୂତନ ପ୍ରକାର ଉଡ଼ାଜାହାଜ ତିଆରିକଲେ, ଯାହାର ଠାର ନାଁ ଥିଲା "ପ୍ରୋଜେକ୍‌ଟ ଆନଭିଲ" । ତାର ବିଶେଷତ୍ୱ ହେଲା ଯେ, ସେଥିରେ ଚାଳକ ନଥାଇ ମଧ୍ୟ ତାହା ଠିକ୍ ଜାଗାରେ ପହଞ୍ଚିଯାଉଥିଲା । ଅନ୍ୟ ଗୋଟାଏ ଜାହାଜ ଦୂରରେ ରହି ତାକୁ ନିୟନ୍ତ୍ରିତ କରୁଥିଲା ।

ଏହି ଜାହାଜଟାକୁ ପ୍ରଥମେ ଭୂଇଁରୁ ଉଠାଇବାପାଇଁ ଜଣେ ଚାଳକ ଓ ଜଣେ ସହକାରୀ ଚାଳକ ଆବଶ୍ୟକ ହୁଅନ୍ତି । ଏହା ପ୍ରାୟ ଦଶ ଟନ ବୋମାଧରି ଉପରକୁ ଉଠେ ; କିନ୍ତୁ ଥରେ ଉପରେ ଉଡ଼ିଲାମାତ୍ରେ ଚାଳକମାନେ ଆକାଶଛତା ଧରି ତଳକୁ ଖସି ଆସନ୍ତି ଓ ସେ ତା'ର ଆପେ ଆପେ ଉଡ଼େ ଓ ଅନ୍ୟ ଏକ ଜାହାଜ ତା'ଠୁ ଦୂରରେ ରହି ଅପ୍ରତ୍ୟକ୍ଷ ଭାବରେ ତାକୁ ଲକ୍ଷ୍ୟସ୍ଥଳ ଆଡ଼କୁ ଉଡ଼ାଇଦିଏ । ଶେଷରେ ଏଇ ଅନ୍ୟ ଜାହାଜଟି ତାକୁ ଏମିତି ଭାବରେ ନିୟନ୍ତ୍ରିତ କରିଦିଏ ଯେ, ଦଶଟନ ବୋମା ସହିତ ଜାହାଜଟି ଲକ୍ଷ୍ୟସ୍ଥଳ ଉପରେ ଓଜାଡ଼ି ହୋଇପଡ଼େ । ଭି-୨ ରକେଟ ଘାଟୀ ଉପରେ ଏଇପରି ଆକ୍ରମଣ କରିବାପାଇଁ ଯୋଜନା ହୋଇଥିଲା ।

ଏହିପରି ଏକ ବୋମାବାହୀ ଜାହାଜରେ ଯିବାପାଇଁ ଜୋ ତାଙ୍କ ନିଜ ଆଡ଼ୁ ଆଗ୍ରହ ପ୍ରକାଶ କଲେ ଏବଂ ଗଲେ । ବୋମାବାହୀ ଜାହାଜ ସଙ୍ଗେ ଆଉ ଦୁଇଟା ନିୟନ୍ତ୍ରଣକାରୀ ଜାହାଜ ମଧ୍ୟ ପ୍ରସ୍ଥାନର ଅଭିମୁଖେ ଉଡ଼ିଲେ ; କିନ୍ତୁ ତା'ପରେ କ'ଣ-ହେଲା କେହି ଜାଣନ୍ତି ନାହିଁ କିମ୍ବା ଭବିଷ୍ୟତରେ କେହି ଜାଣିବାର ଉପାୟ ମଧ୍ୟ ନାହିଁ ; କିନ୍ତୁ ଆକାଶଛତା ସାହାଯ୍ୟରେ ଓହ୍ଲାଇବାର ଠିକ୍ ପୂର୍ବରୁ ମଝି ଆକାଶରେ ବୋମାବାହୀ ଜାହାଜଟି ଫାଟି ଗୁଣ୍ଡ ହୋଇଗଲା । ଜୋ ଏବଂ ତାଙ୍କ ସହକାରୀ ଚାଳକ ସେଇ ମୁହୂର୍ତ୍ତରେ ସେହିଠାରେ ଭସ୍ମ ହୋଇଗଲେ ।

ମୃତ୍ୟୁପରେ ଜୋ'ଙ୍କ ନାମରେ ପ୍ରାୟ ମାନେ ମେଡ଼ାଲ ଦିଆଗଲା । ନୌବାହିନୀ କ୍ରସ୍ ଅମେରିକାନ୍ ଡିଫେନ୍ସ ମେଡ଼ାଲ ।

ଜୋଙ୍କର ମୃତ୍ୟୁ ଜାକ୍‌ଙ୍କର ପ୍ରାଣରେ ତନ୍ତ୍ରୀକୁ ଥରାଇଦେଲା । ଜୋ'ଙ୍କୁ ସେ କେତେ ଭଲ ପାଉଥିଲେ, କେତେ ପ୍ରଶଂସା କରୁଥିଲେ । ପିଲାଦିନେ ତାଙ୍କ ସଙ୍ଗେ କେତେ ପ୍ରତିଯୋଗିତା କରୁଥିଲେ । ସବୁକଥାରେ ସେ ଥିଲେ ତାଙ୍କର ପଥପ୍ରଦର୍ଶକ ।

**ରାଜନୀତି**

୧୯୪୫ ବେଳକୁ ଯୁଦ୍ଧ ସରି ଆସୁଥିଲା । ଜର୍ମାନୀ ସୈନ୍ୟମାନେ ପ୍ରାଣ ବିକଳରେ ଦୁଇଆଡ଼ୁ ପଛଘୁଞ୍ଚା ଦେଇ ଓହରି ଆସୁଥିଲେ ଓ ଜାପାନୀମାନଙ୍କୁ ଦକ୍ଷିଣ ପ୍ରଶାନ୍ତ ମହାସାଗର ଦ୍ୱୀପମାନଙ୍କରୁ ଘଉଡ଼ି ଦିଆଯାଉଥିଲା । ସେମାନଙ୍କର ସବୁ ଯୁଦ୍ଧ ଯୋଜନା ପଣ୍ଡ ହୋଇଗଲା । ଶେଷରେ ଯୁଦ୍ଧ ବିଧ୍ୱସ୍ତ ପୃଥିବୀ ଶାନ୍ତି ପାଇଁ ଅନାଇ ରହିଲା ।

ଅନ୍ୟ ପକ୍ଷରେ କେନେଡ଼ି ମଧ୍ୟ ନିଜର ଶାନ୍ତି ପାଇଁ ଅନାଇ ରହିଲେ ।

ବର୍ତ୍ତମାନ ସେ କ'ଣ କରିବେ ସେହି ଚିନ୍ତାରେ ଖାଲି ରହିଲେ । ବୟସ ସେତେ-ବେଳକୁ ତାଙ୍କୁ ୨୮ ବର୍ଷ । ଦେଖିବାକୁ ଖୁବ୍ ସୁନ୍ଦର ମଧ୍ୟ । ଯୁଦ୍ଧରେ ଖୁବ୍ ନାଁ କରି ଫେରିଥାନ୍ତି । ହାତରେ ମଧ୍ୟ ଲକ୍ଷ ଲକ୍ଷ ଟଙ୍କା । ଅନ୍ୟ ପକ୍ଷରେ ପିଠି ଜଖମ ପାଇଁ ସବୁବେଳେ ଭାରି କଷ୍ଟ ହେଉଥାଏ ଓ ସେ ପର୍ଯ୍ୟନ୍ତ ବି ବେଲ୍ଟ ପିନ୍ଧାରୁ ମୁକ୍ତି ମିଳି ନ ଥାଏ । ତା' ଛଡ଼ା ହାତରେ କୌଣସି କାମ ନ ଥାଏ । ଅବଶ୍ୟ ତାଙ୍କର ଯାହା ଅବସ୍ଥା ସେ ଅବସ୍ଥାରେ ଅନ୍ୟ କେହି ଥିଲେ ଏତେ ଚିନ୍ତା କରନ୍ତେ ନାହିଁ । କାରଣ, ଲକ୍ଷ ଲକ୍ଷ ଟଙ୍କା ଯାହା ହାତରେ ଥାଏ, ତାକୁ ତ ଆଉ କଷ୍ଟ କରି କାମ କରିବାକୁ ପଡ଼େନାହିଁ ।

ଧନୀ ଲୋକମାନେ ଯେମିତି ଖେଳ କସରତ, ମଉଜ ମଜଲିସ କରି ଜୀବନ କଟାଇ ଦେବାକୁ ଚାହାନ୍ତି, ଜାକଙ୍କର ସେମିତି ଧାରଣା ଆଦୌ ନ ଥିଲା । ରୁଜଭେଲ୍ଟ, ରକ୍‌ଫେଲର ଓ ହାରିମାନ୍ ପ୍ରଭୃତି ଆମେରିକାର ଖୁବ୍ ବଡ଼ ଧନୀଲୋକ । ସେମାନଙ୍କ ପରିବାରର ଲୋକେ ଯେମିତି ମଉଜ ମଜଲିସ୍‌ରେ ଜୀବନ କାଟୁଥିଲେ, କେନେଡ଼ି ପରିବାର ଲୋକେ ତାହା ପସନ୍ଦ କରୁ ନ ଥିଲେ । କେନେଡ଼ିମାନେ ଭାବୁଥିଲେ, ଖେଳିବାକୁ ହେଲେ ଖୁବ୍ ଜୋରରେ ଖେଳିବାକୁ ହେବ ।

ତେଣୁ ତାଙ୍କୁ ଯାହା ଭଲ ଅଛେ, ସେହିଭଳି ଗୋଟିଏ କାମ ସେ ବାଛିଲେ । ସେ ଜାଣିଥିଲେ, ସବୁ କାମ ଭିତରେ ତାଙ୍କୁ ଭଲ ଲେଖି ଅଛେ । ତେଣୁ ସେ ନିଜର ଶକ୍ତି ପରୀକ୍ଷା ପାଇଁ ଆନ୍ତର୍ଜାତିକ ସମ୍ବାଦ ଯୋଗବରାହ ପ୍ରତିଷ୍ଠାନରେ ଗୋଟିଏ ସମ୍ବାଦଦାତା ଗ୍ରୁକିରି ପାଇଁ ସେ ଦରଖାସ୍ତ କଲେ ଓ ଗ୍ରୁକିରି ପାଇଲେ ମଧ୍ୟ ।

ତାଙ୍କୁ ପ୍ରଥମେ ଯିବାକୁ ହେଲା ସାନ୍‌ଫ୍ରାନ୍‌ସିସକୋ । ସେଠି ବିଶ୍ୱ ଶାନ୍ତି ପାଇଁ ଯେଉଁ ଆନ୍ତର୍ଜାତିକ ଜାତିସଙ୍ଘ ବସିଲା, ସେହି ସମ୍ପର୍କରେ ସମ୍ବାଦ ଯୋଗାଇବା ପାଇଁ ତାଙ୍କୁ ଦାୟିତ୍ୱ ଦିଆଗଲା । ସାରା ଦୁନିଆ ଏବେ ସାନ୍‌ଫ୍ରାନ୍‌ସିସକୋ ଆଡ଼କୁ ଅନାଇ ରହିଥିଲେ । କାରଣ ଏହି ସମ୍ମିଳନୀ ଉପରେ ପୃଥିବୀର ନିରପତ୍ତା ନିର୍ଭର କରୁଥିଲା ।

ଯୁଦ୍ଧ ବିଧ୍ୱସ୍ତ ଲୋକମାନେ ଆଶା କରିଥିଲେ — ସେଠି ବୋଧହୁଏ ପୃଥିବୀର ସବୁ ଦେଶର ପ୍ରତିନିଧିମାନେ ଏକାଠି ବସି କୌଣସି ଗୋଟିଏ ଉପାୟ ବାହାର କରିବେ, ଯା' ଫଳରେ ପୃଥିବୀରେ ଆଉ ଯୁଦ୍ଧ ହେବ ନାହିଁ । ସେଠି ଯାହା ସବୁ ଘଟିଲା, କେନେଡ଼ି ତା'ର ରିପୋର୍ଟ ତାଙ୍କ ନ୍ୟୁୟର୍କ ହେଡ୍ ଅଫିସକୁ ପଠାଇଲେ । କିନ୍ତୁ ସେଥିରେ ସେ ବିଶେଷ କିଛି ଆଶାର ସୂଚନା ଦେଖି ପାରିଲେ ନାହିଁ । ସେ କହିଲେ, ଇଂଲଣ୍ଡ, ଆମେରିକା ଓ ଫ୍ରାନ୍‌ସ ତିନୋଟି ବଡ଼ ଶକ୍ତି ଯଦି ଏକାଠି କାନ୍ଧକୁ କାନ୍ଧ ମିଳାଇ ଠିଆ ହୋଇପାରିବେ, ତାହେଲେ କିଛି ହୋଇପାରିବ । ତଥାପି ସେମାନଙ୍କୁ କମ୍ୟୁନିଷ୍ଟ ଶକ୍ତି ସହିତ ଖୁବ୍ ଲଢ଼େଇ କରିବାକୁ ପଡ଼ିବ ।

ଏହାପରେ ଜାକ କିଛି ସମୟ ୟୁରୋପରେ ବୁଲାବୁଲି କରି ୟୁରୋପରେ ଯୁଦ୍ଧ ପରେ କ'ଣ ସବୁ ଘଟୁଛି ଓ ଇଂଲଣ୍ଡରେ ନିର୍ବାଚନ କେମିତି ଚାଲିଛି, ସେହି ବିଷୟରେ ନ୍ୟୁୟର୍କକୁ ଖବର ପଠାଇଲେ । ଜାକ୍ ଦେଖିଲେ, ଯୁଦ୍ଧ ପରେ ୟୁରୋପର ଗଣତନ୍ତ୍ର ଦେଶମାନେ ସେମାନଙ୍କର ଅବସ୍ଥା ସୁଧାରିବା ପାଇଁ ଖୁବ୍ ଜୋରସୋରରେ କାମ ଚଳାଇ ଅଛନ୍ତି ଓ ୟୁରୋପୀୟ ଦେଶମାନଙ୍କର ଏହି କର୍ମତତ୍ପରତା ଦେଖି ତାଙ୍କ ଉତ୍ସାହ ଅନେକ ବଢ଼ିଗଲା । 'ବିଲାତ କାହିଁକି ଶୋଇଥିଲା'' ବହି ଲେଖିଲାବେଳେ ୟୁରୋପରେ ସେ ଯେଉଁ ଶିଥିଳତା ଦେଖିଥିଲେ, ତାହା ଆଉ ନ ଥିଲା ।

ସମ୍ବାଦପତ୍ରରେ କିଛିଦିନ କାମ କରିବା ପରେ ଏଇ କାମ ପ୍ରତି ତାଙ୍କର ଶ୍ରଦ୍ଧା କମିଗଲା । ଏଣୁ ଜାକ ୧୯୪୫ ମସିହାରେ ୟୁରୋପରୁ ଫେରିଲାମାତ୍ରେ ସେହି ଆନ୍ତର୍ଜାତିକ ସମ୍ବାଦ ପ୍ରତିଷ୍ଠାନରୁ ଇସ୍ତଫା ଦେଇଦେଲେ ।

ଲୋକେ କହନ୍ତି, ଦିନେ ସନ୍ଧ୍ୟାବେଳେ ଜାକ୍ ତାଙ୍କ ବାପାଙ୍କ ସଙ୍ଗେ ଅନେକ ସମୟ ଆଲୋଚନା କରି ସାରିଲା ପରେ ରାଜନୀତିରେ ଯୋଗ ଦେବାପାଇଁ ସ୍ଥିର କଲେ । ତାଙ୍କ ବାପା କୁଆଡ଼େ କହିଲେ, ଜୋ' ତ ଦେଶ ପାଇଁ ଯୁଦ୍ଧରେ ଜୀବନ ଦେଲେ । ତେଣୁ ଜାକ୍ ଲୋକ-ସେବା କରିବା ପାଇଁ ରାଜନୀତିରେ ଯୋଗ ଦେବା ଉଚିତ୍ ।

ଜାକ୍ ରାଜନୀତିରେ ଯୋଗ ଦେବାରୁ ବଷ୍ଟନର ପୁରୁଣା ରାଜନୀତିଜ୍ଞମାନେ ଟିକିଏ ଆଶ୍ଚର୍ଯ୍ୟ ହୋଇ ପଡ଼ିଲେ । ସେମାନେ ପୁରୁଣା ଲୋକ, ସେମାନଙ୍କର ବହୁତ ଅନୁଭୂତି, ନାନା ପ୍ରକାର ଦୁର୍ନୀତି ମଧ୍ୟ ସେମାନଙ୍କୁ ଜଣା । ଛୋଟପିଲା ଜଣେ ତାଙ୍କ ସଙ୍ଗେ ଲଢ଼େଇ କରିବାକୁ ଆସିଛି ଦେଖି କେତେକ ମନେ ମନେ ହସିଲେ ଓ ଭାବିଲେ, ଏଥର ବିନା ପରିଶ୍ରମରେ କାମ ହାସଲ ହୋଇଯିବ ।

କିନ୍ତୁ ଜାକ୍‌ଙ୍କ ଯୋଜନା ଥିଲା ଭିନ୍ନ । ସେ ଜାଣିଥିଲେ ଯେ ରାଜନୀତି କରିବାକୁ ହେଲେ ନିଜେ ସେ ନିଜ ପାଇଁ ଲଢ଼ାଇ କରିବେ । ତାଙ୍କ ପାଇଁ ଅନ୍ୟ କେହି କରିପାରିବେ ନାହିଁ । କ୍ରମେ ସେ ଲୋକମାନଙ୍କ ପାଖକୁ ଗଲେ ଏବଂ କହିଲେ,

"ମୋ ଭାଇ ତୋ ମରିଗଲେ ବୋଲି ମୁଁ ରାଜନୀତିରେ ପଶିଲି । ମୋର ଯଦି କାଲି କିଛି ହୋଇଯାଏ, ତେବେ ମୋ ସାନଭାଇ ବବି ଆସି ମୋ ଜାଗାରେ ଠିଆ ହେବ । ଯୋଗକୁ ଯଦି ବବି ମରିଯାଏ, ତେବେ ଟେଡ଼ି ଆସି ତା' ସ୍ଥାନ ପୂରଣ କରିବ ।

## ସିନେଟର କେନେଡ଼ି

ଜାକ୍ ସିନେଟର ହେବା ପରେ ଆଦୌ ଜଣେ କଂଗ୍ରେସ ଲୋକ ପରି ଦେଖା-ଯାଉ ନ ଥିଲେ ।

କଂଗ୍ରେସର ସଦସ୍ୟ ହେଲାବେଳକୁ ତାଙ୍କୁ ମୋଟେ ୨୯ ବର୍ଷ ହୋଇଥିଲା । କିନ୍ତୁ ସମସ୍ତଙ୍କ ଭିତରେ ସେ ଖୁବ ପିଲା ଦେଖାଯାଉଥିଲେ । ତାଙ୍କ କପାଳବାଳ କେଶରକ ଯେମିତି ତାଙ୍କ ମୁହଁରେ ଅଯତ୍ନ ଭାବରେ ପଡ଼ିଥାଏ, ତାହା ଦେଖି ଅନେକ ତାଙ୍କୁ କଲେଜ ପିଲା ବୋଲି ଭାବୁଥିଲେ । କିନ୍ତୁ ଲୋକଙ୍କର ଯେଉଁ ଧାରଣା ସେ ଖୁବ୍ ଚଞ୍ଚଳ ଦୂର କରିଦେଲେ । ନିର୍ବାଚନବେଳେ ବଷ୍ଟନରେ ଲୋକଙ୍କୁ ସେ ଯାହା ସବୁ ପ୍ରତିଶ୍ରୁତି ଦେଇଥିଲେ, ତାକୁ ରକ୍ଷା କରିବା ପାଇଁ ସେ ସବୁପ୍ରକାର ଚେଷ୍ଟା କଲେ । ଫଳରେ, ୧୯୪୮ ଓ ୧୯୫୦ ରେ ଦୁଇଥର ସେ ସେହି ଜାଗାରୁ କଂଗ୍ରେସକୁ ନିର୍ବାଚିତ ହେଲେ । କାଳକ୍ରମେ ସେ ୱାସିଂଟନର ଭିତର ବାହାର ସବୁ ରାଜନୀତି ଜାଣିଗଲେ ଓ ପ୍ରତ୍ୟେକ ନିର୍ବାଚନ ପରେ ଥରକୁ ଥର ସେ ଅଧିକ ଲୋକପ୍ରିୟ ହୋଇ ଉଠିଲେ ।

୧୯୫୦, ତାଙ୍କର ସିନେଟକୁ ଯିବାପାଇଁ ଇଚ୍ଛା ହେଲା । ସିନେଟ ପାଇଁ ଲଢ଼ିବା ଭାରି କଷ୍ଟ । ତଥାପି ସେ ବୁଝି ବିଚାରି ଲଢ଼ିବା ପାଇଁ ସ୍ଥିର କଲେ । ସେ ଦେଖିଲେ, କଂଗ୍ରେସରେ ୪୩୫ ଜଣ ସଦସ୍ୟ । ସେମାନଙ୍କ ଭିତରେ ଉଠି ନାଁ କରିବା ସୁବିଧାଜନକ ନୁହେଁ, କିନ୍ତୁ ସିନେଟର ମେମ୍ବର ସଂଖ୍ୟା ଖୁବ୍ କମ୍ । ସେଠି ଆମେରିକା ତଥା ପୃଥିବୀ ସ୍ତରର ଦାୟିତ୍ୱ ଯେମିତି, ବଡ଼ ନାଁ କରିବା ପାଇଁ ମଧ୍ୟ ସେମିତି ସୁବିଧା ।

୧୯୫୨ ରେ ସିନେଟ ନିର୍ବାଚନ ହେବାର ଥିଲା । ସେଥିରେ ସେ ହେନେରୀ କାବଟ ଲଜଙ୍କ ସ୍ଥାନ ଦଖଲ କରିବା ପାଇଁ ସ୍ଥିର କରିଥିଲେ । କାମଟା ଅବଶ୍ୟ ଖୁବ୍ କଠିନ, ତଥାପି ଏଇ କେତେ ବର୍ଷ ହେଲା ସାରା ଆମେରିକାରେ ବଡ଼ ବଡ଼ ୩୫୧ଟା ସହରରେ ବୁଲି ବୁଲି ସେ ଯାହା କରିଥିଲେ, ସେଥିରେ ତାଙ୍କର ଜିତିବାର ଖୁବ୍ ଆଶା ଥିଲା । ୧୯୪୬ ରେ କଂଗ୍ରେସ ସିଟ୍ ପାଇଁ ଲଢ଼ିଲାବେଳେ ତାଙ୍କୁ ସିନା କେହି ଚିହ୍ନି ନଥିଲେ, ଏବେ ତ ସେ ଖୁବ୍ ଜଣାଶୁଣା ହୋଇ ଯାଇଥିଲେ ।

୧୯୫୨ ନିର୍ବାଚନରେ ଆମେରିକାର ପ୍ରେସିଡେଣ୍ଟ ପଦ ପାଇଁ ଡେମୋକ୍ରାଟିକ୍ ପାର୍ଟିରୁ ଆଇଜେନ ହୋୱରଙ୍କର ଠିଆ ହେବା କଥା । ଆଇଜେନ ହୋୱର ନିଜେ ଖୁବ୍ ଲୋକପ୍ରିୟ ଓ ଲଜଙ୍କର ଜଣେ ଖୁବ୍ ବଡ଼ ସମର୍ଥକ । ତେଣୁ ଲଜଙ୍କ ସହିତ ପ୍ରତିଦ୍ୱନ୍ଦିତା କରିବା ଅର୍ଥ ଆଇଜେନ ହୋୱରଙ୍କ ସହିତ ପ୍ରତିଦ୍ୱନ୍ଦିତା କରିବା । ଆଇଜେନ ହୋୱରଙ୍କୁ ପ୍ରେସିଡେଣ୍ଟ ପଦରେ ଠିଆ କରାଇବା ପାଇଁ ଲଜ ଥିଲେ ପ୍ରଥମ ଉଦ୍ୟୋକ୍ତା । ତେଣୁ ୧୯୫୨ ନିର୍ବାଚନରେ ସେ ରହିଲେ ତାଙ୍କ ନିର୍ବାଚନର କ୍ୟାମ୍ପ ମ୍ୟାନେଜର ।

ଜାକ୍ ଦେଖିଲେ, ଲଜ ଯେତେବେଳେ ଆଇଜେନ ହୋୱରଙ୍କ କାମରେ ବେଶୀ ସମୟ ବ୍ୟସ୍ତ ରହିବେ, ନିଶ୍ଚୟ ତାଙ୍କ ନିଜ କାମ ସେ ବେଶୀ କରିପାରିବେ ନାହିଁ । ତେଣୁ ସେ ଏମିତି ଜୋରସୋରରେ ଅଭିଯାନ ଆରମ୍ଭ କରିଦେଲେ ଯେ, ଲଜଙ୍କ ପକ୍ଷରେ ତାଙ୍କୁ ପାରିବା ସହଜ ହେଲାନାହିଁ; ମାତ୍ର କଠିନ ପରିଶ୍ରମ ଯୋଗୁଁ ଜାକ୍‌ଙ୍କର ପିଠି ବ୍ୟଥା ପୁଣି ଆରମ୍ଭ ହୋଇଗଲା । ତଥାପି ସେ ନିଜର ଅଭିଯାନ ଜାରି ରଖିଲେ ।

ନିର୍ବାଚନ ଅଭିଯାନ ଯେମିତି ଆଗେଇ ଚାଲିଲା, କେନେଡିମାନେ ମଧ୍ୟ ଯେମିତି ଆଗେଇ ଚାଲିଲେ । ନିର୍ବାଚନ ଦିନ ସକାଳ ଦିସବଞ୍ଜୁ ଦେଖାଗଲା, ରାଷ୍ଟ୍ରପତି ପଦପାଇଁ ଆଇଜେନହୋଭର ଅଛନ୍ତି ଷ୍ଟିଭେନସନଙ୍କ ଆଗରେ ଓ ସିନେଟ ସିଟ୍‌ରେ ଲଦ୍ ଅଛନ୍ତି କେନେଡିଙ୍କ ଆଗରେ ; କିନ୍ତୁ କେନେଡି ଭାବୁଥାଅନ୍ତି, ସେ ନିଶ୍ଚୟ ଜିତିବେ । ସତକୁ ସତ ଭୋଟ ଗଣାସରିଲାବେଳକୁ ଦେଖାଗଲା, ଲଦ୍‌ଙ୍କୁ ସେ ୭୦,୦୦୦ ଭୋଟରେ ପରାଜିତକରି ଜୟଲାଭ କରିଛନ୍ତି । ସବୁଠୁ ମଜାକଥା ହେଲା, ଆଇଜେନ୍‌ହୋଭର ଯେତେବେଳେ ଷ୍ଟିଭେନସନଙ୍କୁ ୨୦୮,୦୦୦ ଭୋଟରେ ପରାସ୍ତ କଲେ, ସେତିକିବେଳେ ତାଙ୍କରି ସମର୍ଥିତ ପ୍ରାର୍ଥୀ ଲଦଙ୍କୁ ଜାକ୍ ୭୦,୦୦୦ ଭୋଟରେ ପରାସ୍ତ କଲେ ।

ଏବେ ଜାକ ୱାସିଙ୍ଗଟନକୁ ସିନେଟର ହୋଇ ଫେରିଲେ । ବୟସ ସେତେବେଳକୁ ୩୫ ବର୍ଷ । ଅବିବାହିତ । ଖୁବ୍ ସୁନ୍ଦର ତଥା ଆମେରିକାର ଜଣେ ବିଶିଷ୍ଟ ଲୋକ । ଏଇ ସମୟରେ ତାଙ୍କର ପରିଚୟ ହୋଇଥିଲା ଗୋଟିଏ ଝିଅ ସହିତ । ତାଙ୍କ ନାଁ ହେଲା ଜ୍ୟାକଲିନ ଲି ବୁଭିଅର ।

ପ୍ରକୃତରେ ଜାକିପରି ଝିଅ ନହେଲେ ଜାକଙ୍କର ପସନ୍ଦ ହୁଅନ୍ତା ନାହିଁ । ଯେମିତି ପତଳା, ସେମିତି ସୁନ୍ଦର । ୧୯୫୩ ମସିହାରେ ନିଉପୋର୍ଟ ସେଣ୍ଟମେରୀ ରୋମାନ କାଥଲିକ ଚର୍ଚ୍ଚରେ ସେମାନଙ୍କର ବାହାଘର ହୋଇଗଲା ।

ଏ ମଣିଷ ଯାହା ଚାହେଁ, ତାହା ସବୁବେଳେ ସଫଳ ହୁଏନାହିଁ । ପୂର୍ବରୁ ଜାକଙ୍କ ପିଠିରେ ଫୁଟବଲ ଖେଳରେ ଯେଉଁ ଆଘାତ ଲାଗିଥିଲା ଏବଂ ଜାପାନୀ ଜାହାଜ ମାଡ଼ରେ ତାହା ଆଉରି ଖରାପ ହୋଇଯାଇଥିଲା । ଫଳରେ ପିଠିର ଯନ୍ତ୍ରଣା ଦିନକୁ ଦିନ ଏପରି ବଢ଼ିଗଲା ଯେ, ସେ ସହିପାରିଲେ ନାହିଁ ।

ମେରୁଦଣ୍ଡରେ ମାଡ଼ହେଲେ ସହିବା ଖୁବ୍ କଷ୍ଟ । ଜାକ୍ ଦେଖିଲେ ଦିନକୁ ଦିନ ଯନ୍ତ୍ରଣା ବଢ଼ିବାରେ ଲାଗିଛି । ଏଣୁ ସେ ଅନେକ ସମୟରେ ଯନ୍ତ୍ରଣାରୁ ରକ୍ଷାପାଇବା-ପାଇଁ ବାଡ଼ିଧରି ଚାଲୁଥିଲେ ; ମାତ୍ର ବାଡ଼ିଧରି ଚାଲିବାକୁ ସେ ପସନ୍ଦ କରୁନଥିଲେ । ଏଣୁ ସେ ଯେକୌଣସି ସଭାସମିତିକୁ ଭାଷଣ ଦେବାପାଇଁ ଗଲାବେଳେ ଦ୍ୱାରମୁହଁ ପର୍ଯ୍ୟନ୍ତ ବାଡ଼ିଧରି ଯାଉଥିଲେ, ତାପରେ ବାଡ଼ିଟି ଜଣେ ବନ୍ଧୁଙ୍କୁ ଧରାଇଦେଇ ମିଲିଟାରୀ ସୈନ୍ୟପରି ସିଧାସଳଖ ସଭାଭିତରକୁ ଚାଲିଯାଉଥିଲେ ।

ପରେ ବାଧ୍ୟହୋଇ ୧୯୫୪ ଅକ୍‌ଟୋବର ମାସରେ ଦଳେ ଡାକ୍ତର ତାଙ୍କ ମେରୁଦଣ୍ଡ ଦେହରେ କଠିନ ଅସ୍ତ୍ରୋପଚାର ଆରମ୍ଭ କରିଦେଲେ ।

ଏହାପରେ ୧୯୫୬ ମସିହାରେ କେନେଡି ଉପରାଷ୍ଟ୍ରପତି ପଦପାଇଁ ପ୍ରତିଦ୍ୱନ୍ଦିତା-କରି ମାତ୍ର ୬୮ଟି ଭୋଟରେ ପରାଜିତ ହୋଇଥିଲେ ।

**ବିଜୟ**

ରିପବ୍ଲିକାନ ଦଳର ଲୋକେ କହିଲେ, ଜାକ୍‌ଙ୍କର ବୟସ ମାତ୍ର ୪୪ ବର୍ଷ, ତାଙ୍କର ବିଶେଷ କିଛି ଅନୁଭୂତି ନାହିଁ । ତେଣୁ ଆମେରିକାର ପ୍ରେସିଡେଣ୍ଟ ତଥା ସ୍ୱାଧୀନ ପୃଥିବୀର ନେତା ହିସାବରେ କାମ ଚଳାଇବା ତାଙ୍କ ପକ୍ଷରେ ସହଜ ହେବନାହିଁ । ଏଇ ରିପବ୍ଲିକାନ ଦଳ ପକ୍ଷରୁ ପ୍ରାର୍ଥୀ ହୋଇଥିଲେ ନିକସନ । ଏହା ୧୯୬୦ ମସିହାର ନିର୍ବାଚନ ।

ଏଣେ କେନେଡିଙ୍କ ଦଳ ପ୍ରଚାରକଲେ ଯେ, ଯେତେବେଳେ ଏଇ ଆମେରିକା ରାଷ୍ଟ୍ର ପ୍ରଥମେ ଗଢ଼ାହେଲା, ସେଇ ବିପ୍ଳବ ସମୟରେ ଯେଉଁ ନେତାମାନେ ଥିଲେ, ସେମାନଙ୍କ ଭିତରୁ ଅଧିକାଂଶଙ୍କର ବୟସ ୪୦ରୁ ୪୨ ବର୍ଷ ଭିତରେ ଥିଲା । ଉଇଲିୟମ ମାକକନଲି ଯେତେବେଳେ ମରିଗଲେ, ସେତେବେଳେ ମୋଟେ ୪୨ ବର୍ଷ ବୟସରେ ଥିଓଡ଼ୋର ରୁଜଭେଲ୍‌ଟ ଉପରାଷ୍ଟ୍ରପତିରୁ ପ୍ରେସିଡେଣ୍ଟ ହୋଇଗଲେ । ତା'ଛଡ଼ା

ନିକସନ ୱାସିଂଗଟନରେ ଯେତିକି ଦିନ କାମ କରିଥିଲେ, ତାଙ୍କ୍ ମଧ୍ୟ ସେତିକିଦିନ କାମ କରିଥିଲେ । କାରଣ ୧୯୪୬ରେ ଉଭୟ ଏକାବେଳକେ କଂଗ୍ରେସ ସଦସ୍ୟ ହିସାବରେ ରାଜନୈତିକ ଜୀବନ ଆରମ୍ଭ କରିଥିଲେ । ଆମେରିକା ବର୍ତ୍ତମାନ ଅତି ଗୋଟାଏ ସନ୍ଧିସ୍ଥଳରେ ଉପସ୍ଥିତ ହୋଇଛି । ଏତେବେଳେ ଦେଶକୁ ଏଥିରୁ ରକ୍ଷା କରିବାପାଇଁ ଓ ନୂତନ ମାର୍ଗ ଦେଖାଇବାପାଇଁ ଆମେରିକାର ଜଣେ ଖୁବ୍ ସାହସୀ, ଦୂରଦର୍ଶୀ ତଥା ଯୁବକ ପ୍ରେସିଡେଣ୍ଟ ଦରକାର, ତାଙ୍କ୍ ହେଉଛନ୍ତି ସେଥିପାଇଁ ପ୍ରକୃତ ଲୋକ ।

ଲଢେଇ ଆରମ୍ଭ ହୋଇଗଲା । ଏକ ପକ୍ଷରେ କେନେଡି ଓ ଜନସନ, ଅନ୍ୟ ପକ୍ଷରେ ନିକସନ ଓ ଲଜସ ପ୍ରେସିଡେଣ୍ଟ କାବଟ୍ ଲଜ । ଏଇ କାବଟ୍ ଲଜଙ୍କୁ ୧୯୫୨ ମସିହା ସିନେଟ ନିର୍ବାଚନରେ ତାଙ୍କ୍ ପରାସ୍ତ କରିଥିଲେ ।

ରିପବ୍ଲିକାନ ଓ ଡେମୋକ୍ରାଟ ଉଭୟ ଦଳ ଲୋକମାନଙ୍କୁ ଅତି ମାମୁଲି ପ୍ରତିଶ୍ରୁତି ଦେଇଥିଲେ ; କିନ୍ତୁ ଡେମୋକ୍ରାଟମାନେ କହୁଥିଲେ ତାହାର ସମୃଦ୍ଧି ଓ ସାମାଜିକ ସଂସ୍କାରପାଇଁ ଅଧିକ ଟଙ୍କା ଖର୍ଚ୍ଚହେବା ଉଚିତ ; କିନ୍ତୁ ନିକସନ ଏହି କଥାକୁ ପରିହାସକରି କହିଲେ, "କଥାଟା ମନ୍ଦ ନୁହେଁ, ଖୁବ୍ ବଡ଼ ଆଦର୍ଶ ; କିନ୍ତୁ ଏତେ ଟଙ୍କା ଆସିବ କେଉଁଠୁ ? ଟଙ୍କାତକ ତାଙ୍କଙ୍କର ନିଜର ନୁହେଁ, ସେତକ ଦେଶବାସୀଙ୍କର । ଏହାର ଜବାବ ଦେଇ ତାଙ୍କ କହୁଥିଲେ, ଏମିତିଆ ଯୁକ୍ତି ଶୁଣିଲେ ହସିବା କଥା । ଦେଶ ବିଦେଶ ଦ୍ରୁତି ଆଗେଇବାକୁ ହେଲେ ଆମେ ବର୍ତ୍ତମାନ ଯେମିତି ସ୍ଥିର ହୋଇ ବସିଛେ, ତାକୁ ଛଡ଼ିବାକୁ ହେବ । ଅଧିକା ଟଙ୍କା ତାହାର ସମୃଦ୍ଧିରୁ ଆସିବ । ବେକାରମାନଙ୍କପାଇଁ କାମ ଯୋଗାଇବାକୁ ହେଲେ ବର୍ତ୍ତମାନର ଏଇ ନିଷ୍କ୍ରିୟତା ଛାଡ଼ି ଆମକୁ ଅନେକ ଆଗେଇବାକୁ ହେବ ।"

ନଭେମ୍ବର ୮ ତାରିଖ ୧୯୬୦ ନିର୍ବାଚନରେ ଖୁବ୍ ବେଶୀ ଭୋଟରେ ଜିତିବାର ପ୍ରଶ୍ନ ନଥିଲା । ଏଇ ଶତାବ୍ଦୀ ଭିତରେ ବୋଧହୁଏ ଏବେ ସବୁଠୁ ପାଖାପାଖି ଲଢେଇ । ସେଦିନ କେନେଡି ପରିବାରର ସମସ୍ତେ ସେମାନଙ୍କର ହ୍ୟାନିସପୋର୍ଟ ଘରେ ବସି ଟେଲିଭିଜନରେ ବଡ଼ ଉଦ୍‌ବେଗର ସହିତ ନିର୍ବାଚନ ଫଳାଫଳ ଲକ୍ଷ୍ୟ-କରୁଥିଲେ । ପ୍ରଥମେ ପ୍ରଥମେ ତାଙ୍କ ଜିତୁଥିଲେ, ପୁଣି ହାରିବାକୁ ଆରମ୍ଭ କଲେ । ଶେଷରେ ନିକସନଙ୍କୁ ହାର ମାନିବାକୁ ପଡ଼ିଲା । ଜନ. ଏଫ. କେନେଡି ଯୁକ୍ତରାଷ୍ଟ୍ର ଆମେରିକାର 'ପ୍ରେସିଡେଣ୍ଟରୂପେ ନିର୍ବାଚିତ ହେଲେ ।

**ଉପସଂହାର**

ନିର୍ବାଚନ ବର୍ତ୍ତମାନ ଶେଷ । ଜନ. ଏଫ. କେନେଡି ବର୍ତ୍ତମାନ ସମଗ୍ର ପୃଥିବୀର ସର୍ବଶ୍ରେଷ୍ଠ ଶକ୍ତିଶାଳୀ ବ୍ୟକ୍ତି । ସାମାନ୍ୟ ଗୋଟାଏ କଲମଗାରରେ ସେ ବର୍ତ୍ତମାନ ଆମେରିକାର ମହାଶକ୍ତିଶାଳୀ ଜଳ, ସ୍ଥଳ, ଆକାଶ ବାହିନୀକୁ ଆକ୍ରମଣ କରିବାପାଇଁ ନିର୍ଦ୍ଦେଶ ଦେଇପାରନ୍ତି ।

ବର୍ତ୍ତମାନ ତାଙ୍କଙ୍କର କାମହେଲା ୧୯୬୧ ଜାନୁଆରୀ ୨୦ ତାରିଖରେ ସେ ପ୍ରେସିଡେଣ୍ଟ ଆସନ ଗ୍ରହଣ କରିବା ପୂର୍ବରୁ ତାଙ୍କୁ ଉପଦେଶ ଦେଲାଭଳି ଦଳେ ଲୋକ ଖୋଜିବେ । ଶେଷରେ ସେ ବହୁ ବାଛି ବାଛି ଜନ ରସ୍କ, ରବର୍ଟ ଏସ. ମାକନାମରଙ୍କୁ ଦେଲେ ।

କେନେଡି ଆମେରିକାରେ ରାଷ୍ଟ୍ରପତିଭାବେ ଶାସନ କାର୍ଯ୍ୟ ତୁଲାଇବା ସମୟରେ ଆମେରିକା ଲୋକମାନଙ୍କର ବହୁବିଧ ଉନ୍ନତି ହୋଇଥିଲା ; ମାତ୍ର ଦୁର୍ଭାଗ୍ୟ ଯେ, ଜଣେ ଆତତାୟୀ ଦ୍ୱାରା ନିହତ ହୋଇଥିଲେ ।

●

# ବିଶ୍ୱବିଚିତ୍ରା

## ସଭ୍ୟତା'ର ଉତ୍ପତ୍ତି ସ୍ଥଳ

ଟାଇଗ୍ରୀସ୍ ଏବଂ ଇଉଫ୍ରେଟିସ ନଦୀଦ୍ୱୟ ମଧ୍ୟରେ ସାତ ହଜାରରୁ ଅଧିକ ବର୍ଷ ତଳେ ସଭ୍ୟତା ର ଆରମ୍ଭ ହୋଇଥିଲା । ସୁମେରମାନେ ଏଠାର ଅବବାହିକାରେ ବସତି ସ୍ଥାପନ କରିଥିଲେ । ପରେ ଏହି ଅଞ୍ଚଳର ନାମ ମେସୋପଟାମିଆ ହୋଇଥିଲା । ଏବେ ଏହା ଇରାକ୍‌ରେ । ସୁମେରୀୟମାନେ କୃଡ଼ିଆ କରି ରହିଲେ । ଏକତ୍ରିତ ହୋଇ ଗ୍ରାମ ସ୍ଥାପନ କଲେ । କ୍ଷୀର, ମାଂସ ଏବଂ ଚମଡ଼ା ପାଇଁ ଗୃହପାଳିତ ପଶୁ ପାଳନ କରିବାରେ ଲାଗିଲେ । ଗହମ, ବାଲି ଓ ଅନ୍ୟାନ୍ୟ ଶସ୍ୟ ଉତ୍ପାଦନ ମଧ୍ୟ କଲେ । ସେମାନେ ଶିକାର କରୁଥିଲେ ବି । ସୁମେରୀୟମାନେ ପ୍ରଥମେ ଲିଖିତ ଭାଷା ବାହାର କରିଥିଲେ । ଏହା ଚିତ୍ରଦ୍ୱାରା ସ୍ପଷ୍ଟ ବୁଝା ହେଉଥିଲା । ଖ୍ରୀଷ୍ଟ ପୂର୍ବ ୫,୦୦୦ ରେ ଏହି ସଭ୍ୟତାର ଉତ୍ପତ୍ତି ହୋଇଥିଲା ।

## ନୀଳନଦୀ ଅବବାହିକାର ସଭ୍ୟତା

ଗ୍ରୀକ୍ ଐତିହାସିକ ହେରୋଡ଼ଟସ୍ ମିଶରକୁ 'ନୀଳ ନଦୀର ଦାନ' ବୋଲି ଅଭିହିତ କରଇଛନ୍ତି । ପ୍ରଥମେ ଆଦିମ ସମୟରେ ଯେଉଁମାନେ ନୀଳନଦୀ ଅବବାହିକାରେ ବାସ କରିଥିଲେ, ସେମାନେ କୁଟୀର ନିର୍ମାଣ କରିବା ଜାଣିଥିଲେ । କୃଷି ଓ ଗୃହପାଳିତ ପଶୁପାଳନ ସମ୍ପର୍କରେ ସେମାନଙ୍କର ଧାରଣା ବି ରହିଥିଲା । ସେମାନେ ୧୨୦୦ କିଲୋମିଟର ଅଞ୍ଚଳରେ ବସବାସ ଆରମ୍ଭ କରି ଦେଇଥିଲେ । ସେ ସମୟରେ ମିଶର ଦୁଇଭାଗରେ ବିଭକ୍ତ ହୋଇଥିଲା । ନିମ୍ନ ମିଶର ଏବଂ ଉଚ୍ଚ ମିଶର ( Lower Egypt & Upper Egypt ) ବୋଲି କୁହାଯାଉଥିଲା । ଖ୍ରୀଷ୍ଟପୂର୍ବ ୩୨୦୦ ରେ ଏଗୁଡ଼ିକର ମିଶ୍ରଣ ହୋଇଥିଲା ଏବଂ ଫାରୋ ( Pharaoh )ଙ୍କ ଦ୍ୱାରା ସଭ୍ୟତା ଏହି ଉନ୍ନତ ସ୍ତରକୁ ଆସିଥିଲା । ଖ୍ରୀଷ୍ଟପୂର୍ବ ୩୦ ରେ କ୍ଲିଓପେଟ୍ରାଙ୍କ ମୃତ୍ୟୁ ପର୍ଯ୍ୟନ୍ତ ସଭ୍ୟତାର ଶ୍ରୀବୃଦ୍ଧି ଘଟିଥିଲା । ମିଶର କଳାପ୍ରେମୀମାନଙ୍କର ଦେଶ । ମିଶରବାସୀ ପ୍ରଥମେ ୩୬୫ ଦିନର କ୍ୟାଲେଣ୍ଡର ବାହାର କରଇଥିଲେ । ଖ୍ରୀଷ୍ଟପୂର୍ବ ୫,୦୦୦ ରେ ଏହି ସଭ୍ୟତାର ଆରମ୍ଭ ।

## ମାଳୟରେ ବସତି ସ୍ଥାପନ

ଖ୍ରୀଷ୍ଟପୂର୍ବ ୫,୦୦୦ ରେ ଅଷ୍ଟ୍ରେଲିଆ, ପୋଲିନେସିଆ ଏବଂ New guinean ଅଧିବାସୀମାନେ Australo-Melanesoid ଦଳରେ ବିଭକ୍ତ ହୋଇ ମାଲୟସିଆ ଆଡ଼କୁ ଅଗ୍ରସର ହେଲେ । ମାଲୟସିଆରେ ଏବେ ମଧ୍ୟ ସେହି ପ୍ରାଚୀନ ଅଧିବାସୀଙ୍କ ମଧ୍ୟରୁ କ୍ଷୁଦ୍ର ଦଳ ରହିଅଛନ୍ତି ।

## ବ୍ରୋଞ୍ଜର ଆବିଷ୍କାର ଖ୍ରୀଷ୍ଟପୂର୍ବ ୩୫୦୦ ରେ

ଖ୍ରୀଷ୍ଟପୂର୍ବ ୩୫୦୦ ରେ ମିଶରର ସମାଧି ସ୍ତମ୍ଭରେ ବ୍ରୋଞ୍ଜ ଅସ୍ତ୍ର ଓ ହତିଆର ଆଦିର ବ୍ୟବହାର ସମ୍ପର୍କରେ ସୂଚନା ମିଳିଥିଲା । ଏହାର ପ୍ରାୟ ଏକ ହଜାର ବର୍ଷ ପୂର୍ବରୁ ବ୍ରୋଞ୍ଜର ବ୍ୟବହାର ଆଦିମ ଅଧିବାସୀମାନେ ଜାଣି ପାରିଥିଲେ । ଏହା ଏକ ମିଶ୍ର ଧାତୁ । ତାମ୍ର ଏବଂ ଟିନ୍ ମିଶ୍ରଣରେ ଏହି ଧାତୁ ପ୍ରସ୍ତୁତ ହୋଇଥାଏ ।

## କ୍ରୀଟ ଦେଶର ସଭ୍ୟତା

ପ୍ରାକ୍ ଐତିହାସିକ କାଳରେ ପ୍ରାଚୀନ ସମୁଦ୍ରକୂଳିଆ ଲୋକେ Aegean Sea ଉପକୂଳରେ ବସବାସ ଆରମ୍ଭ କରିଦେଲେ । ସେମାନେ ଏହାପରେ ମାସିଡୋନିଆର ଦକ୍ଷିଣ ଅଞ୍ଚଳକୁ ମାଡ଼ିଗଲେ । ସେମାନେ କ୍ରିଟ ଦ୍ୱୀପରେ ବାସିନ୍ଦା ହୋଇ ଯାଇଥିଲେ । ପ୍ରଥମେ ସେମାନେ ଗୁମ୍ଫାରେ ବାସ କରୁଥିଲେ । ପରେ କୁଡ଼ିଆ ନିର୍ମାଣ କରିବା ଶିଖିଲେ । ସେମାନେ ଶିଳ୍ପପ୍ରିୟ ଜାତି । ସେମାନଙ୍କର ସଭ୍ୟତାକୁ Minos କୁହାଗଲା । ସେହି ଦ୍ୱୀପର ଜନସାଧାରଣଙ୍କୁ Minoahs ବୋଲି କୁହା ଯାଇଥିଲା । ଖ୍ରୀଷ୍ଟପୂର୍ବ ୩୦୦୦ ରୁ ଖ୍ରୀଷ୍ଟପୂର୍ବ ୨୦୦୦ ମଧ୍ୟରେ ଏହି ସଭ୍ୟତା ଗଢି ଉଠିଥିଲା । ଦ୍ୱୀପର ଅଧିବାସୀମାନେ ମଧ୍ୟ ପ୍ରାଚ୍ୟ ସହିତ ଖ୍ରୀଷ୍ଟପୂର୍ବ ୬୦୦୦ ରୁ ବାଣିଜ୍ୟ କାରବାର ଚଳାଇଲେ ।

## ଟ୍ରୟ ଯୁଦ୍ଧର ଅବସାନ

ଖ୍ରୀଷ୍ଟପୂର୍ବ ୮୫୦ ରେ ହୋମର୍ ଇଲିୟଡ୍ ରଚନା କରିଥିଲେ । ସେଥିରେ ଟ୍ରୟ ନଗର ସମ୍ପର୍କରେ ବର୍ଣ୍ଣନା ରହିଅଛି । ଗ୍ରୀକ୍‌ମାନେ ଟ୍ରୟ ଅଧିକାର କରି ନେଇଥିଲେ । ଏହା ଖ୍ରୀଷ୍ଟପୂର୍ବ ୬୮୬୦ର ଘଟଣା ।

## ସମ୍ରାଟ୍ ଫାରୋଙ୍କ ପିରାମିଡ୍

ଗ୍ରୀସ୍‌ର ସମ୍ରାଟ ଫାରୋ ( Pharaoh Khuku ), ଚେଫରେନ୍ ( Chephren ) ଏବଂ ମାଇସିରିନୁସ୍ ( Mycerinus ) ଙ୍କର ପିରାମିଡ୍‌ଗୁଡ଼ିକ ସର୍ବୋତ୍କୃଷ୍ଟ । ସମ୍ରାଟ୍ ଫାରୋଙ୍କ ପିରାମିଡ୍ ବିଶ୍ୱର ସପ୍ତ ଆଶ୍ଚର୍ଯ୍ୟ ମଧ୍ୟରେ ଅନ୍ୟତମ । ଏହାର ଦୈର୍ଘ୍ୟ ୨୩୦ ମିଟର ଏବଂ ଉଚ୍ଚତା ୧୩୮ ମିଟର । ଏହାକୁ ନିର୍ମାଣ କରିବା ପାଇଁ ଏକ ହଜାର କ୍ରୀତଦାସ କୋଡ଼ିଏ ବର୍ଷକାଳ ଲାଗିଥିଲେ । ଏହି ପିରାମିଡ୍ ସମୁଦାୟ ଟଙ୍କା ମଣ୍ଡି ଉପରେ ନିର୍ମିତ ହୋଇଥିଲା । ପିରାମିଡ୍‌ର ନିର୍ମାଣ ହୋଇଥିଲା ଖ୍ରୀଷ୍ଟପୂର୍ବ ୨୭୮୦ରୁ ଖ୍ରୀଷ୍ଟପୂର୍ବ ୨୬୦୦ ମଧ୍ୟରେ ।

## ମହେଞ୍ଜୋଦାରୋ ସଭ୍ୟତା

ସିନ୍ଧୁ ନଦୀ ଅବବାହିକାରେ ବିଶ୍ୱର ତୃତୀୟ ପ୍ରାଚୀନ ସଭ୍ୟତା ଗଢି ଉଠିଥିଲା । ଏହାର ରାଜଧାନୀ ଖ୍ରୀଷ୍ଟପୂର୍ବ ୨୫୦୦ ରେ ନିର୍ମାଣ କରାଯାଇଥିଲା । ଏହି ସହରର ନାମକରଣ ହୋଇଥିଲା ମହେଞ୍ଜୋଦାରୋ । ସେ ସମୟରେ ଏହା ଯଥେଷ୍ଟ ଉନ୍ନତ ଥିଲା । ଏହି ମହେଞ୍ଜୋଦାରୋର ଲୋକସଂଖ୍ୟା ରହିଥିଲା ୫୦,୦୦୦ ଏବଂ ଦଶ ବର୍ଗ କିଲୋମିଟର ବ୍ୟାପି ଅଞ୍ଚଳରେ ଏହି ସଭ୍ୟତା ଗଢ଼ି ଉଠିଥିଲା । ଏହାର ଅଧିବାସୀମାନେ କର୍ମଠ ବି ଥିଲେ । ଅନେକେ ମାଟିର ମୂର୍ତ୍ତି ଓ ଖେଳଣା ଗଢ଼ିବାକୁ ପସନ୍ଦ କରୁଥିଲେ ।

## ଦକ୍ଷିଣ ଆମେରିକାର ପ୍ରାଚୀନ ସଭ୍ୟତା

ଦକ୍ଷିଣ ଆମେରିକାରେ ପ୍ରଥମେ ନୋମାଡ଼ିକ ଜାତିର ଶିକାରୀ ଏବଂ କେଉଟ ରହୁଥିଲେ । ସେମାନେ କ୍ରମେ ଉତ୍ତର ଆମେରିକା ଅଞ୍ଚଳକୁ ଅଗ୍ରସର ହେଲେ । ସେମାନେ ମଧ୍ୟ ଅନେକ ଅଞ୍ଚଳକୁ ଚାଲିଗଲେ । ବୋଲିଭିଆ ଏବଂ ପେରୁରେ ସଭ୍ୟତାର ଉନ୍ନତି ଯଥେଷ୍ଟ ଘଟିଥିଲା । ଆଣ୍ଡେସ୍ ( Andes ) ଉନ୍ନତିର ଚରମକୁ ଯାଇଥିଲା । ଏହା ଖ୍ରୀଷ୍ଟପୂର୍ବ ୨୫୦୦ରୁ ଖ୍ରୀଷ୍ଟପୂର୍ବ ୨୦୦୦ ମଧ୍ୟରେ ଗଢ଼ି ଉଠିଥିଲା ।

### ସର୍ବପ୍ରଥମ ଗ୍ରହବିଜ୍ଞାନ ଚର୍ଚ୍ଚା ବେବିଲୋନରେ

ବେବିଲୋନ, ମିଶର ଓ ଚୀନ୍‌ରେ ପ୍ରାଚୀନ କାଳରେ ବିଶ୍ୱାସ କରୁଥିଲେ ଯେ, ସ୍ୱର୍ଗୀୟ ଶକ୍ତି ମଣିଷର ଜୀବନକୁ ପ୍ରଭାବିତ କରୁଛି । କ୍ରମେ ବେବିଲୋନର ଅଧିବାସୀମାନେ ଭାବିଲେ ଯେ, ନକ୍ଷତ୍ରମାନେ ଈଶ୍ୱରଙ୍କର ବାର୍ତ୍ତା ବହନ କରିଛନ୍ତି । ସେମାନଙ୍କର ଧର୍ମଯାଜକମାନେ ଯତ୍ନର ସହିତ ଏହାର ରହସ୍ୟ ଭେଦ କରୁଛନ୍ତି । ବେବିଲୋନର ଅଧିବାସୀମାନେ ନକ୍ଷତ୍ରଗୁଡ଼ିକୁ ଈଶ୍ୱରଙ୍କ ନାମରେ ନାମିତ କରାଇଲେ । ସେମାନେ ରାତ୍ରିରେ ଆକାଶକୁ ଦୃଷ୍ଟି ରଖୁଥିଲେ ଏବଂ ବିଜ୍ଞାନରୁ ଜ୍ୟୋତିଷବିଦ୍ୟା ମଧ୍ୟ ଜାଣି ପାରିଥିଲେ ।

### ଦେଶରେ ବାଳଶ୍ରମିକଙ୍କ ସଂଖ୍ୟା ୫୦ ଲକ୍ଷ

ଭାରତରେ ବିଭିନ୍ନ ସଂସ୍ଥାରେ ୫୦ ଲକ୍ଷ ବାଳଶ୍ରମିକ କାର୍ଯ୍ୟ କରୁଛନ୍ତି । ଦିଆସିଲି କାରଖାନା ଓ ଇଟାଭାଟି ଆଦିରେ ଏହି ବାଳଶ୍ରମିକ ଅଧିକ ସଂଖ୍ୟାରେ କାର୍ଯ୍ୟ କରିବାରେ ଲାଗିଛନ୍ତି ।

### ବିଶ୍ୱରେ ପ୍ରତିରକ୍ଷା ବ୍ୟୟ ୧୦୦୦ ଶହ କୋଟି ଡଲାର

ସମଗ୍ର ବିଶ୍ୱରେ ପ୍ରତିରକ୍ଷା ବାବଦରେ ମୋଟ ୧୦୦୦ ଶହ କୋଟି ଡଲାର ବ୍ୟୟ ହେଉଅଛି ; ମାତ୍ର କୃଷି ଓ ଅନ୍ୟାନ୍ୟ ବ୍ୟୟ ବାର୍ଷିକ ମାତ୍ର ୪୦ ଶହ କୋଟି ହେଉଛି ।

### ୧୯୮୪ରେ ୪୦ଟି ଦେଶରେ ୧୫ ଶହ ମୃତ୍ୟୁଦଣ୍ଡ

ପୃଥିବୀରେ ୧୯୮୪ରେ ୪୦ଟି ରାଷ୍ଟ୍ରରେ ପନ୍ଦର ଶହରୁ ଅଧିକ ବ୍ୟକ୍ତିଙ୍କୁ ମୃତ୍ୟୁଦଣ୍ଡ ଦିଆଯାଇଛି । ଇରାନରେ ୬୬୧, ଚୀନରେ ୨୯୭, ନାଇଜେରିଆରେ ୧୧୦, ଦକ୍ଷିଣ ଆଫ୍ରିକାରେ ୧୧୪ ଏବଂ ଆମେରିକାରେ ୧୪ ଜଣଙ୍କୁ ମୃତ୍ୟୁଦଣ୍ଡ ଦିଆ-ହୋଇଛି ।

### ଇଥିଓପିଆରେ ବର୍ଷକ ତେର ମାସ

ଇଥିଓପିଆରେ ବର୍ଷକ ୩୬୫ ଦିନ । ପ୍ରତ୍ୟେକ ମାସ ୩୦ ଦିନ ଏବଂ ଗୋଟିଏ ମାସ ୫ ଦିନ । ପ୍ରତି ଚାରିବର୍ଷରେ ଗୋଟିଏ ମାସ ୬ ଦିନିଆ ହୁଏ ।

### ଭାରତରେ ୧୪୪୦୦୦ଟି ଡାକଘର

ଭାରତବର୍ଷରେ ବ୍ରାଞ୍ଚ ପୋଷ୍ଟ ଅଫିସ ଓ ସବ୍ ପୋଷ୍ଟ ଅଫିସକୁ ମିଶାଇ ୧୪୪୦୦୦ଟି ଡାକଘର ରହିଛି । ତିନିଲକ୍ଷ ବିଭାଗୀୟ ଏବଂ ତିନିଲକ୍ଷ ଅଣବିଭାଗୀୟ କର୍ମଚାରୀ ରହିଛନ୍ତି ଡାକ ବିଭାଗ ଅଧୀନରେ ।

### ଚାଳିଶ କୋଟି ଟଙ୍କା ଚିଙ୍ଗୁଡ଼ି ରପ୍ତାନୀ

ଭାରତରୁ ପ୍ରତିବର୍ଷ ପ୍ରାୟ ୪୦ କୋଟି ଟଙ୍କାର ଚିଙ୍ଗୁଡ଼ି ବିଦେଶକୁ ରପ୍ତାନୀ ହେଉଛି । ବିଦେଶରେ ଚିଙ୍ଗୁଡ଼ି କିଲୋ ପ୍ରତି ମୂଲ୍ୟ ୧୨ ଡଲାର । ଭାରତୀୟ ମୂଲ୍ୟ ହିସାବରେ ଏହା ୧୩୨ ଟଙ୍କା ।

### କ୍ୟାନସରରେ ମୃତ୍ୟୁସଂଖ୍ୟା ବୃଦ୍ଧି

୧୯୬୦ ମସିହାରୁ ୧୯୮୦ ମସିହା ପର୍ଯ୍ୟନ୍ତ ୨୮ଟି ଶିଳ୍ପୋନ୍ନତ ରାଷ୍ଟ୍ର କ୍ୟାନସର ରୋଗରେ ପୁରୁଷଙ୍କ ମୃତ୍ୟୁସଂଖ୍ୟା ଶତକଡ଼ା ୫୫ ଏବଂ ମହିଳାଙ୍କ ମୃତ୍ୟୁସଂଖ୍ୟା ଶତକଡ଼ା ୪୦ ବୃଦ୍ଧି ପାଇଛି ।

## ଦ୍ୱାଦଶ ଶତାବ୍ଦୀର ଜୈନମୂର୍ତ୍ତି

ମଧ୍ୟପ୍ରଦେଶର ସାହ୍‌ଜାନପୁରରେ ଏକ ସ୍କୁଲ ପରିସର ମଧ୍ୟରୁ ମାଟିତଳୁ ୨୫ଟି ପ୍ରାଚୀନ ଜୈନମୂର୍ତ୍ତି ମିଳିଛି । ଏଗୁଡ଼ିକ ଖ୍ରୀଷ୍ଟପୂର୍ବ ଦ୍ୱାଦଶ ଶତାବ୍ଦୀର । ୧୬ଟି ମୂର୍ତ୍ତି ଧଳା ମାର୍ବଲ ପଥରରେ, ୮ଟି ମୂର୍ତ୍ତି କଳା ମାର୍ବଲ ପଥରରେ ଏବଂ ଗୋଟିଏ ସାଧାରଣ ମାର୍ବଲ ପଥରରେ ନିର୍ମିତ । ଉଚ୍ଚତା ସାତ ଇଞ୍ଚରୁ ସତର ଇଞ୍ଚ ।

## ଭାରତରେ ୩୮୫ ଟଙ୍କାର ସାମୁଦ୍ରିକ ଦ୍ରବ୍ୟ ରପ୍ତାନୀ

ଭାରତରୁ ୧୯୮୦ ମସିହାରେ ସାମୁଦ୍ରିକ ଦ୍ରବ୍ୟ ରପ୍ତାନୀ ବାବଦରେ ୩୮୫ ଟଙ୍କା ମିଳିଛି । ପୂର୍ବବର୍ଷ ୩୬୨ କୋଟି ଟଙ୍କା ରପ୍ତାନୀରୁ ମିଳିଥିଲା ।

## ମଦର ଟେରେସାଙ୍କୁ 'ବିଶ୍ୱନାଗରିକ' ଉପାଧି

ମଦର ଟେରେସାଙ୍କୁ ଆମେରିକା ବିଶ୍ୱ ନାଗରିକ (Citizen of the World) ଉପାଧିରେ ସମ୍ମାନିତ କରିଛି । ଏହା ଆମେରିକାର ଶ୍ରେଷ୍ଠ ବେସାମରିକ ଉପାଧି । ମଦର ଟେରେସା ୧୯୭୯ ମସିହାରେ ନୋବେଲ ପୁରସ୍କାର ପାଇଥିଲେ ।

## ଭାରତ-ଆମେରିକା ମହାକାଶ ଯାତ୍ରା

ଭାରତର ଯୁବ ବୈଜ୍ଞାନିକ ଶ୍ରୀ ଏନ. ପି. ଭଟ୍ଟ ଏବଂ ଶ୍ରୀ ରାଧାକୃଷ୍ଣନ ଭାରତ-ଆମେରିକା ମିଳିତ ମହାକାଶଯାତ୍ରା ପାଇଁ ତାଲିମ ପାଇବାକୁ ମନୋନୀତ ହୋଇଛନ୍ତି । ସେମାନେ ୧୯୮୬ ମସିହାରେ ମହାକାଶ ସଟଲ ଯାନରେ ଯାତ୍ରା କରିବେ ।

## ଭାରତକୁ ବିଶ୍ୱ ବ୍ୟାଙ୍କର ସାହାଯ୍ୟ

ଭାରତକୁ ବିଶ୍ୱବ୍ୟାଙ୍କରୁ ୧୯୮୫-୮୬ ମସିହାପାଇଁ ୨୨୦ କୋଟି ଡଲାର ଅଧିକ ସାହାଯ୍ୟ ମିଳିପାରେ ୨୦।୩୦ କୋଟି ଡଲାର ଅଧିକ ସାହାଯ୍ୟ ମିଳିପାରେ ।

## ଶୁକ୍ର ଗ୍ରହକୁ ରୁଷର ଦ୍ୱିତୀୟ ମହାକାଶ ଯାନ

ଶୁକ୍ର ଗ୍ରହକୁ ରୁଷ ମାନବବିହୀନ ଦ୍ୱିତୀୟ ମହାକାଶଯାନ ପଠାଇଥିଲା । ଚଳିତ ମାସ ତାହା ଶୁକ୍ର ଗ୍ରହରେ ପ୍ରବେଶ କରିପାରିଛି ।

## ପ୍ରତିବର୍ଷ ୧୨ ନିୟୁତ ଶିଶୁଙ୍କ ଅକାଳ ମୃତ୍ୟୁ

ନିରକ୍ଷରତା ଏବଂ ପୁଷ୍ଟିକର ଖାଦ୍ୟ ଅଭାବରୁ ପ୍ରତିବର୍ଷ ୧୨ ନିୟୁତ ଶିଶୁ ମୃତ୍ୟୁବରଣ କରୁଛନ୍ତି । ଦୁର୍ଭିକ୍ଷ ଓ ଯୁଦ୍ଧରେ ମରୁଥିବା ଶିଶୁମାନଙ୍କଠାରୁ ଏହାର ସଂଖ୍ୟା କିନ୍ତୁ ଅଧିକ ।

## ଭାରତରେ ୪୦ ଲକ୍ଷ କୁଷ୍ଠରୋଗୀ

ସରକାରୀ ହିସାବରେ ଭାରତବର୍ଷରେ ୪୦ ଲକ୍ଷ କୁଷ୍ଠରୋଗୀ ରହିଛନ୍ତି । ବେସରକାରୀ ମତରେ କୁଷ୍ଠରୋଗୀଙ୍କର ସଂଖ୍ୟା ପ୍ରାୟ ୮୦ ଲକ୍ଷ । ନବଜାତ ଶିଶୁଙ୍କ ମଧ୍ୟରେ ପ୍ରାୟ ୨୦ ଲକ୍ଷ କୁଷ୍ଠରୋଗ ଭୋଗୁଛନ୍ତି ।

## ଭାରତର ୪୪ ହଜାର ୭ ଶହ ବର୍ଗ ମାଇଲ ଅଞ୍ଚଳ ଚୀନ ଓ ପାକିସ୍ତାନରେ

ଚୀନ୍ ଓ ପାକିସ୍ତାନ ଭାରତର ୪୪ ହଜାର ୭ ଶହ ବର୍ଗ ମାଇଲ ଅଞ୍ଚଳ ବେଆଇନ ଭାବରେ ଦଖଲ କରିଛନ୍ତି । ଚୀନ ୧୪ ହଜାର ୫ ଶହ ବର୍ଗ ମାଇଲ ଏବଂ ପାକିସ୍ତାନ ୩୦ ହଜାର ୨ ଶହ ବର୍ଗ ମାଇଲ ଅଞ୍ଚଳ ଦଖଲ କରିନେଇଛନ୍ତି । ପାକିସ୍ତାନ ଚୀନ୍‌କୁ ୨ ହଜାର ବର୍ଗ ମାଇଲ ଅଞ୍ଚଳ ଦେଇଛି ।

**ଭାରତରେ ୭୩ ହଜାର ଟନ ୟୁରାନିୟମ**

ଦେଶରେ ୭୩ ହଜାର ଟନ ୟୁରାନିୟମ ଗଚ୍ଛିତ ରହିଛି । ସବୁସ୍ଥାନରେ ଆଣବିକ ବିଦ୍ୟୁତ୍ ଷ୍ଟେସନରେ ଆଉ ଦୁଇଟି ୟୁନିଟ ଖୋଲାଯିବ । ପ୍ରତ୍ୟେକ ୟୁନିଟ୍‌ରୁ ୨୩୫ ମେଗାୱାଟ ଶକ୍ତି ଉତ୍ପାଦିତ ହେବ ।

**ଟଙ୍କାର ମୂଲ୍ୟ ୧୪ ପଇସା**

୧୯୮୫ ଫେବୃଆରୀ ସୁଦ୍ଧା ଦେଶରେ ଏକ ଟଙ୍କାର ମୂଲ୍ୟ ୧୪.୭ ପଇସାକୁ ହ୍ରାସ ପାଇଛି । ୧୯୪୯ ମସିହାରେ ଟଙ୍କାର ମୂଲ୍ୟ ଶହେ ପଇସା ଥିଲା । ୧୯୬୧-୬୨ରେ ଟଙ୍କାର ମୂଲ୍ୟ ୯୬.୧୫ ପଇସା ଥିଲା ।

**୨୦୦୦ ମସିହାରେ ଜନସଂଖ୍ୟା ୬ ଶହ କୋଟି**

ବିଶ୍ୱ ଜନସଂଖ୍ୟାର ବୃଦ୍ଧି ହାର ହ୍ରାସ ପାଉଥିଲେ ବି ପ୍ରତିବର୍ଷ ୮।୯ କୋଟି ପର୍ଯ୍ୟନ୍ତ ଜନସଂଖ୍ୟା ବୃଦ୍ଧି ହେଉଛି । ଏଭଳି ପରିସ୍ଥିତିରେ ୨୦୦୦ ମସିହା ବେଳକୁ ପୃଥିବୀର ଲୋକସଂଖ୍ୟା ପ୍ରାୟ ୬୧୦ କୋଟିରେ ପହଞ୍ଚିବ ।

**ଆଣ୍ଡାମାନ ଓ ନିକୋବରରେ ୫୫୬ଟି ଦ୍ୱୀପ**

ଆଣ୍ଡାମାନ ଓ ନିକୋବର ୫୫୬ଟି ଦ୍ୱୀପର ସମାବେଶ ; ମାତ୍ର ୩୦ଟି ଦ୍ୱୀପରେ ଜନବସତି ରହିଛି । ଏହାର ଲୋକସଂଖ୍ୟା ଏକଲକ୍ଷ ୮୮ ହଜାର ୭୪୧ ।

**ଚୀନ୍ ସଭ୍ୟତାରେ ବିଭିନ୍ନ ରାଜବଂଶ**

ହୋୟାଂ ହୋ କୂଳରେ ଚୀନ୍‌ର ସଭ୍ୟତା ପ୍ରଥମେ ଗଢିଉଠିଥିଲା ଖ୍ରୀଷ୍ଟପୂର୍ବ ୨୨୦୫ରୁ ଖ୍ରୀଷ୍ଟପୂର୍ବ ୧୧୨୨ ମଧ୍ୟରେ । ଚୀନର ପ୍ରଥମ ରାଜବଂଶକୁ ହସାଇ (Hsai dynasty) ବୋଲି କୁହାଯାଏ । ଏହାର ପ୍ରତିଷ୍ଠାତା ହେଉଛନ୍ତି ସମ୍ରାଟ ୟୁ (Emperor Yu) । ଖ୍ରୀଷ୍ଟପୂର୍ବ ୨୩ଶ ଶତାବ୍ଦୀରେ ସେ ଅଭିଷିକ୍ତ ହୋଇଥିଲେ । ସେ ଏବଂ ପରବର୍ତ୍ତୀ ଅଧୀଶ୍ୱରମାନଙ୍କୁ ସ୍ୱର୍ଗର ପୁତ୍ର (Sons of the Heaven) ବୋଲି ଉପାଧି ଦିଆହୋଇଥାଏ । ପ୍ରସ୍ତର ଯୁଗ ପରେ ବ୍ରୋଞ୍ଜ ଯୁଗ ଆସିଥିଲା । ଚୀନ୍‌ର ସମ୍ରାଟ ହେଲେ ଟି ଆଙ୍ଗ (T' ang) । ସେ ହସାଇ ସମ୍ରାଟଙ୍କୁ ତଡି ଦେଇଥିଲେ । ଶ୍ୟାଙ୍ଗ (Shang) ରାଜବଂଶ ଖ୍ରୀଷ୍ଟପୂର୍ବ ୧୫୦୦ରୁ ପାଞ୍ଚଶହ ବର୍ଷକାଳ ଶାସନ ଦାୟିତ୍ୱରେ ରହିଲେ । ଏହି ସମୟରେ ଦେଶର ସରକାର ପ୍ରତିଷ୍ଠିତ ହେଲା । ଚୀନ କଳା ଓ ବାଣିଜ୍ୟରେ ମଧ୍ୟ ଉନ୍ନତି କରିଥିଲା । ଚୀନ୍‌ରେ ଏହି ସମୟରେ ସିଲ୍କ ଦ୍ରବ୍ୟ ପ୍ରସ୍ତୁତ ହୋଇଥିଲା । ଏହାପରେ ଚୌ (Chou) ରାଜବଂଶ ରାଜତ୍ୱ କଲେ ଚୀନ୍‌ରେ ।

**ଇଣ୍ଡୋନେସିଆରେ ଉପନିବେଶ**

ଇଣ୍ଡୋନେସିଆର ଅନେକ ଦ୍ୱୀପ ପ୍ରାଚୀନ ମଣିଷଙ୍କର ଉପନିବେଶ ହୋଇଥିଲା । ଦକ୍ଷିଣ ପୂର୍ବ ଏସିଆରୁ ସେମାନେ ଆସିଥିଲେ । ମାଳୟକୁ ମଧ୍ୟ କେତେକ ଯାଇଥିଲେ । ଓରାଙ୍ଗ ମାଳୟୁ (Orang Malayu) ଏବେ ମଧ୍ୟ ରହିଛନ୍ତି ।

**ଡାକଟିକଟର ମୂଲ୍ୟ ୮୫ ଲକ୍ଷ ଟଙ୍କା**

ପଶ୍ଚିମ ଜର୍ମାନୀରେ ୧୮୫୧ ମସିହାର ଏକ ଦୁର୍ଲଭ ଡାକଟିକଟ ଏବେ ପ୍ରାୟ ୨୩ ଲକ୍ଷ ମାର୍କରେ ବିକ୍ରୟ କରାଯାଇଛି । ଭାରତୀୟ ମୁଦ୍ରାରେ ଏହା ୮୫ ଲକ୍ଷ ଟଙ୍କା ।

**ମୋଟର ଚାଳିତ ଯନ୍ତ୍ରମାନବ**

ଜାପାନରେ ମୋଟରଦ୍ୱାରା ପରିଚାଳିତ ଏକ ଯନ୍ତ୍ରମାନବ ନିର୍ମାଣ କରାଯାଇଛି । ଏହା ବାୟୁ ପ୍ରତିରୋଧକ ମୋଟରଦ୍ୱାରା ପରିଚାଳିତ ହୋଇଥାଏ । ଶତକଡା ୩୦ ଭାଗ ବିଦ୍ୟୁତ ଶକ୍ତି କମ୍ ଖର୍ଚ୍ଚହୁଏ ।

**ପୁନାର ସଙ୍ଗୀତ**

ପୁନାର ଜଣେ ଭଦ୍ରବ୍ୟକ୍ତି ଗୋଟିଏ ଟ୍ରାଂଜିଷ୍ଟର କିଣି ଯେଉଁ ସଙ୍ଗୀତ ଶୁଣିଲେ ତାଦ୍ୱାରା ତାଙ୍କ ସ୍ତ୍ରୀ ତ ଚେତା ହରାଇଲେ, ତାଙ୍କର ସର୍ବାଙ୍ଗ ମଧ୍ୟ ଥରିଉଠିଲା । ସେଇ ଟ୍ରାଂଜିଷ୍ଟରଟିକୁ ସେ କିଣିଥିଲେ ବାଜ୍ୟାପ୍ତ ହୋଇ ଜିନିଷ ବିକ୍ରୟ କରୁଥିବା ଗୋଟିଏ ଦୋକାନରୁ । ଶସ୍ତା ଦରରେ କିଣିଥିବା ସେଇ ଜିନିଷଟିକୁ ବଜାଇବାକୁ ଚେଷ୍ଟାକରି ସେ ବିଫଳ ହେଲେ । ଖୋଲି ଦେଖନ୍ତି ତ, ସେଥିରେ ରହିଛି, ତିନିଖଣ୍ଡ ସାବୁନ । କ୍ରୋଧ ଜର୍ଜରିତ ହୋଇ ସେ ଦୋକାନକୁ ଗଲେ ଜିନିଷ ଫେରାଇବାକୁ ; କିନ୍ତୁ ଦୋକାନୀ ଜିନିଷ ଫେରାଇନେବାକୁ ନାରାଜ । ପୁନଶ୍ଚ ଟ୍ରାଂଜିଷ୍ଟର ଘରକୁ ଫେରାଇ ଆଣିଲେ । ପତ୍ନୀ ଖଣ୍ଡେ ସାବୁନ ଖୋଲି ଯେମିତି ଦେଖିଛନ୍ତି, ସେଥିରେ ସୁନା ବିସ୍କୁଟ ରହିଛି । ଚେତା ହରାଇ ସେ ଲଥ୍‌କରି ପଡ଼ିଗଲେ । ଗୃହସ୍ଥ ଆସି ମୂର୍ଚ୍ଛିତା ଗୃହିଣୀଙ୍କୁ ଓ ସୁନା ବିସ୍କୁଟ ଦେଖି ଅନ୍ୟ ଦୁଇଟି ସାବୁନ ଖୋଲି ସେଥିରେ ବି ଦେଖିଲେ ସୁନା ବିସ୍କୁଟ ।

**ଅଶରୀରୀର ମାଧ୍ୟମ**

ଇଂଲଣ୍ଡରେ ବେଶ୍ କିଛିଦିନପାଇଁ ପଲ ମେକଲ୍‌ନି ନାମକ ଜଣେ ବ୍ୟକ୍ତି ଏକ ଅଶରୀରୀର ମାଧ୍ୟମ ଭାବରେ ଖୁବ୍ ପ୍ରସିଦ୍ଧ ହୋଇଯିବା ପରେ ହଠାତ୍ ଆସନଚ୍ୟୁତ-ହୋଇ କେଉଁଠି ଆତ୍ମଗୋପନ କରିଛନ୍ତି ।

ମେକଲ୍‌ନି ଗୋଟିଏ ପ୍ରାୟାନ୍ଧକାର ରୁମ୍‌ରେ ଧ୍ୟାନସ୍ଥ ହେବାପରେ ତାଙ୍କ କଣ୍ଠରୁ ବିଜ୍ଞବାଣୀ ନିଃସୃତ ହୁଏ ଓ ସେ କହନ୍ତି ଯେ, ମିହେସ ନାମକ ଶତାୟୁ ଆତ୍ମା ତାଙ୍କ ମାଧ୍ୟମରେ ସେ ସବୁ କହନ୍ତି ।

ମେକଲନି ପାଟି ଖୋଲିଲେ ବେଳେବେଳେ ଦେଖାଯାଏ, ତାଙ୍କ ପାଟିରେ ଗୋଟିଏ ଗୋଟିଏ ଦ୍ରବ୍ୟ ଫୁଲ, ମାଛ ବା ଅନ୍ୟ କିଛି । ମେକଲନି ତାଙ୍କ ରୁମକୁ ଗୋଟିଏ ଟେପ୍‌ରେକର୍ଡର ନିଅନ୍ତି ସିହେସଙ୍କ ବାଣୀ ରେକର୍ଡପାଇଁ । କେତେକ ସାମ୍ବାଦିକ କୌଶଳକରି ଟେପରେକର୍ଡର ଖୋଲି ଦେଖିଲେ । ମେକଲନି ପାଟିରୁ ବାହାର କରିଥିବା ଛଅଟି ଜିନିଷ ସେଥିରେ ସୁରକ୍ଷିତ । ସେମାନେ ଚୁପଚାପ ରହିଲେ । ତା'ପରେ ହଠାତ୍ ଆଲୁଅ ଜଳାଇ ଟେପ୍‌ରେକର୍ଡରରେ ଥିବା ଜିନିଷ ଦେଖଣାହାରୀଙ୍କୁ ପ୍ରଦର୍ଶିତ କରାଇ ଅପସରିଗଲେ । ତା'ପରଠୁ ଇଂଲଣ୍ଡ ଓ ଅଷ୍ଟ୍ରେଲିଆରେ ବହୁ ଖ୍ୟାତିଥିବା ମେକଲନି ଆତ୍ମଗୋପନ କରିଛନ୍ତି ।

**ଯାନ୍ତ୍ରିକ ପ୍ରହରୀ**

ଜେଲ ପ୍ରହରୀମାନଙ୍କ କାମ ତୁଲାଇବାକୁ ପୋଲାଣ୍ଡର ଏକ ସଂସ୍ଥା ଗୋଟିଏ ରୋବର୍ଟ ଉଦ୍ଭାବନ କରିଛି । ଏହି ବୁଦ୍ଧିଫୁଟ ଉଚ୍ଚା ରୋବର୍ଟଟି ଗୋଟିଏ ନିର୍ଦ୍ଦିଷ୍ଟ ଜାଗାରେ ଘଣ୍ଟା ଘଣ୍ଟାଧରି ପ୍ରହରା ଦେଇପାରେ । ଆଖପାଖର ହେବୁ ଚୋର୍ ଖବର ସେ ନିର୍ଭୁଲଭାବେ ଜଣାଇଦିଏ । ତେବେ ୫୦,୦୦୦ ଡଲାର ମୂଲ୍ୟର ଏହି ରୋବର୍ଟ ଗୁଡ଼ିକ କଏଦୀଙ୍କ ସହ ଧସ୍ତାଧସ୍ତିରେ ଅଂଶଗ୍ରହଣ କଲେ, ସେଗୁଡ଼ିକ ସ୍ୱାତନ୍ତ୍ର୍ୟ ହରାଇ ଧାତବ ସମାବେଶରେ ରୂପାନ୍ତରିତ ହୋଇଯାଆନ୍ତି ।

**ପାଲଟା ବର ଓ ମହାଭାରତ ଯୁଦ୍ଧ**

ରାଜସ୍ଥାନର ଭରତପୁରରେ ଏକ ବାହାଘର ପଟୁଆରରେ ଯେଉଁ ବରଡ଼ଙ୍କ ଯାଉଥିଲେ ସେ "ପ୍ରକୃତ" ବର ନୁହେଁ ବୋଲି କନ୍ୟାପକ୍ଷ ଲୋକ ଜାଣିବାପରେ ବରଣ ସ୍ଥାନରେ ଅକ୍ରମଣ ଆରମ୍ଭ ହୋଇଗଲା । ସାରା ଚନ୍ଦ୍ରିର ଲୋକେ ମିଳିମିଶି ବରଯାତ୍ରୀମାନଙ୍କୁ ଏମିତି ଆକ୍ରମଣ କଲେ ଯେ, ସେମାନଙ୍କ ଲୁଗାପଟା ଚିରିଗଲା,

ମୃତ୍ ଦେହରେ ମାତ ଚିହ୍ନ ଦିଶିଲା । ମାତଆଇ ବରପକ୍ଷ ପୁଷ୍ପଭଞ୍ଜ ଦେବାପରେ ଅନ୍ୟ ଏକ ଯୁବକ ସହ ବିବାହ ହୋଇଥିଲା ।

**ବୃକ୍ଷାଶ୍ରୟୀ ଟେଲିଭିଜନ**

ଶ୍ରୀ ଶିବ ପ୍ରସାଦ ଘୋଷ ନାମକ ଟେଲିଭିଜନ ବିଶେଷଜ୍ଞ ଗୋଟିଏ ପନ୍ଥା ବାହାର କରିଛନ୍ତି, ଯାହାଦ୍ୱାରା ଏଣ୍ଟିନା ବ୍ୟବହାର ନକରି ବି ଟି. ଭି. ଦେଖି ହେବ । ସେ ପନ୍ଥାରେ ଏଣ୍ଟିନା ଭାବରେ କାମ କରିବ ବଡ଼ ବଡ଼ ପତ୍ର ଥିବା ଯେକୌଣସି ଗଛ ।

**ଚା’ ଉତ୍ପାଦନରେ ଭାରତ ପ୍ରଥମ**

ବିଶ୍ୱରେ ଚା’ ଉତ୍ପାଦନରେ ଭାରତ ପ୍ରଥମ ସ୍ଥାନ ଅଧିକାର କରିଛି । ଗତବର୍ଷ ଭାରତରୁ ୪୫୦ କୋଟି ଟଙ୍କାର ଚା’ ବିଦେଶକୁ ରପ୍ତାନୀ କରାଯାଇଛି । ଭାରତବର୍ଷର ଜନସାଧାରଣଙ୍କ ପାଇଁ ୧୦ ଲକ୍ଷ କିଲୋଗ୍ରାମ ଚା’ ଆବଶ୍ୟକ ହୋଇଥାଏ । ନୀଳଗିରିର ପାର୍ବତ୍ୟ ଅଞ୍ଚଳରେ ହେକ୍ଟର ପିଛା ୧୫୦୦ କି: ଗ୍ରା ଚା’ ଉତ୍ପାଦନ କରାହେଉଛି ।

**ଏକ୍ୟୁପଙ୍କଚର ଚିକିତ୍ସାରେ ଆରୋଗ୍ୟ**

ଏକ୍ୟୁପଙ୍କଚର ଚିକିତ୍ସା ଦିନକୁଦିନ ଜନପ୍ରିୟ ହେବାରେ ଲାଗିଛି । ୧୯୮୧ ମସିହାରୁ ପାରାଲିସିସ୍, ଶ୍ୱାସ, ଶ୍ୱେତିବାତ ପ୍ରଭୃତି ଅସାଧ୍ୟ ରୋଗ ଏହାଦ୍ୱାରା ଆରୋଗ୍ୟ କରାଯାଇପାରୁଛି ।

**ଓଡ଼ିଶାରେ ବାଘ ସଂଖ୍ୟା ୨୦୨**

ସଂପ୍ରତି ରାଜ୍ୟରେ ୨୦୨ଟି ବାଘ ରହିଥିବାର ଜଣାପଡ଼ିଛି । ୧୯୭୯ ମସିହା ଗଣନା ଅନୁଯାରେ ରାଜ୍ୟରେ ଚିତାବାଘ ସଂଖ୍ୟା ଦୁଇ ହଜାରରୁ ଊର୍ଦ୍ଧ୍ୱ ।

**ଏସିଆର ବୃହତ୍ତମ ଦୂରବୀକ୍ଷଣ ଯନ୍ତ୍ର**

ତାମିଲନାଡୁର କାଭାଲୁର ପର୍ଯ୍ୟବେକ୍ଷଣ କେନ୍ଦ୍ରଠାରେ ‘ଇଣ୍ଡିଆନ ଇନଷ୍ଟିଚ୍ୟୁଟ ଅଫ ଆଷ୍ଟ୍ରୋ ଫିଜିକ୍ସ’ଦ୍ୱାରା ଏସିଆର ବୃହତ୍ତମ ଦୂରବୀକ୍ଷଣ ଯନ୍ତ୍ର ପ୍ରତିଷ୍ଠା କରାହେଉଛି । ଏହାର ମୂଲ୍ୟ ପ୍ରାୟ ୬ କୋଟି ଟଙ୍କା ।

**ଚୀନ୍‌ର ବାଙ୍ଗଲା ଦେଶକୁ ଋଣ**

ଢାକା ନଗରୀର ସଂପ୍ରସାରଣପାଇଁ ଚୀନ୍ ୩୪.୮ ନିୟୁତ ଡଲାର ଋଣ ଦେଉଛି । ଏହା ଢାକା ନଗରୀର ସଂପ୍ରସାରଣପାଇଁ ବ୍ୟୟ କରାହେବ ।

**କନିକା ଅଭୟାରଣ୍ୟରେ କୁମ୍ଭୀର ରକ୍ଷା**

ଚଳିତ ବର୍ଷ କନିକା ଅଭୟାରଣ୍ୟ କୁମ୍ଭୀର ରକ୍ଷା ଯୋଜନାରେ ୩୧୭ଟି ଅଣ୍ଡା ସଂଗ୍ରହ କରାହୋଇଛି । ୧୯୭୫ ଅକ୍ଟୋବରରେ ଧାମରା ନିକଟସ୍ଥ କାଳିଭଞ୍ଜଡିଆ ଜଙ୍ଗଲରୁ ଗୋଟିଏ କୁମ୍ଭୀର ବସାରୁ ୪୮ଟି ଅଣ୍ଡା ସଂଗ୍ରହ କରାହୋଇଥିଲା । ସେଥିରୁ ୨୪ଟି ଛୁଆ ହୋଇଥିଲା । ସେଥିରୁ ୨୩ଟି ବଉଳା କୁମ୍ଭୀର ଏବଂ ଗୋଟିଏ ଧଳା କୁମ୍ଭୀର ଥିଲା । ଧଳା କୁମ୍ଭୀର ଦଶ ବର୍ଷରେ ଅଣ୍ଡାଦିଏ ଏବଂ ଲୁଣା କୁମ୍ଭୀର ବାର ବର୍ଷରେ ଅଣ୍ଡା ଦେଇଥାଏ ।

**୬୫% ଅମ୍ଳଜାନ ମାନବ ଶରୀରରେ**

ଅଧିକାଂଶ ମାନବ ଶରୀର ଶତକଡ଼ା ୫୫ରୁ ୬୫ ଭାଗ ଜଳରେ ଗଠିତ । ସାଧାରଣ ମାନବ ଶରୀର ରସାୟନିକଭାବେ ଶତକଡ଼ା ୬୫ ଅମ୍ଳଜାନ, ଶତକଡ଼ା ୧୮ ଅଙ୍ଗାରକ, ଶତକଡ଼ା ୧୦ ଉଦଜାନ, ଶତକଡ଼ା ୨ ଚୂନ, ଶତକଡ଼ା ୧ ତାମ୍ର ଏବଂ ଶତକଡ଼ା ୧ ଗନ୍ଧକ ନେଇ ଗଠିତ ହୋଇଥାଏ ।

**ଶିକ୍ଷୟିତ୍ରୀଙ୍କର ଛାତ୍ରଛାତ୍ରୀଙ୍କ ନାତିକୁ ଶିକ୍ଷାଦାନ**

ଆମେରିକା ଯୁକ୍ତରାଷ୍ଟ୍ରର ଦାନଭିଲର ମିସ୍ ମାର୍ଗରେଟ ମାଡେନ ୬୦ ବର୍ଷକାଳ ଶିକ୍ଷୟିତ୍ରୀ ରହି ଆସିଛନ୍ତି । ସେ ତାଙ୍କ ଛାତ୍ରଛାତ୍ରୀଙ୍କର ନାତିକୁ ପଢାଇବାର ସୌଭାଗ୍ୟ ଅର୍ଜନ କରିଛନ୍ତି ।

**୧୯୦ ଦିନ ଧାରାବାହିକଭାବେ ଛିଙ୍କିବା**

ଆମେରିକା ଯୁକ୍ତରାଷ୍ଟ୍ରର ମାଏମିସ୍ଥିତ ଜାନି କ୍ଲାର୍କ ମୂତ୍ରାଶୟ ରୋଗରୁ ମୁକ୍ତ ହେବାବେଳେ ଧାରାବାହିକଭାବେ ୧୯୦ ଦିନଧରି ଛିଙ୍କିଥିଲେ ।

**୧୦୦୦ ବର୍ଷର ରେଟି ତିଆରି ଟେବୁଲ**

ପଶ୍ଚିମ ସାକ୍ସନସର ରଜା ଆଲଫ୍ରେଡଙ୍କର ୧୦୦୦ ବର୍ଷ ପୂର୍ବରୁ ରୋଟିସେକା ଟେବୁଲ ଇଂଲଣ୍ଡର ଲିଙ୍କ୍ ଗ୍ରାମରେ ସୁରକ୍ଷିତ ହୋଇ ରହିଛି ।

**ସୃଷ୍ଟିର ବିଚିତ୍ର ପକ୍ଷୀ**

ଇଣ୍ଡୋନେସିଆ ଅନ୍ତର୍ଗତ ଜାଭାର କ୍ଲିମିଟାର ବାବଲେର୍ ବିଶ୍ୱର ଏକମାତ୍ର ପକ୍ଷୀ ଯାହାର କି ବାପା ମାଆ ତିନୋଟି । ଦୁଇଟି ପୁରୁଷ ପକ୍ଷୀ ଏବଂ ଗୋଟିଏ ପକ୍ଷିଣୀ ସହ ଶିଶୁପକ୍ଷୀ ନୀଡ଼ରେ ରହେ । ପକ୍ଷିଣୀର ଦୁଇଟି ପୁରୁଷ ହିଁ ପକ୍ଷୀ ରହିଥାଏ ।

**କଙ୍କଡ଼ା ଯୋଗୁଁ ଟ୍ରେନ ଚଳାଚଳ ବ୍ୟାହତ**

ମାଞ୍ଚାନିକେରୁ ଟେକେପିକୋ ରେଳରାସ୍ତାରେ ହଜାର ହଜାର କଙ୍କଡ଼ା ରହୁଥିବାରୁ ଟ୍ରେନ ଚଳାଚଳ ବ୍ୟାହତ ହୋଇଥାଏ ।

**ଗାର୍ଲିକ ଅଏଲ ମଶାର ଯମ**

ଗାର୍ଲିକ ଅଏଲଦ୍ୱାରା କ୍ୟୁଲେକ୍ସ ମଶାର ମୃତ୍ୟୁ ହୁଏ ଏବଂ ମଶାର ଡିମ୍ବ ମଧ୍ୟ ନଷ୍ଟ ହୋଇଥାଏ ।

**ମୃତ ଡାକ୍ତରଙ୍କର ବଦଳି**

ତାମିଲନାଡ଼ୁର ଡକ୍ଟର ଦେବରାଜନ ତିରୁଚେଙ୍ଗୋଡ଼ୁ ହସପିଟାଲରୁ ନାମକାଲକୁ ବଦଳି ହୋଇଛନ୍ତି । ବଦଳିର ଦୁଇବର୍ଷ ପୂର୍ବେ ସ୍କୁଟର ଦୁର୍ଘଟଣାରେ ସେ ପ୍ରାଣ ହରାଇଥିଲେ । ମୃତ୍ୟୁପରେ ତାଙ୍କର ତିରୁଚେଙ୍ଗୋଡ଼ୁରୁ ତିରୁଚିଗୁଲକୁ ବଦଳି ହୋଇଥିଲା ।

**ସବୁଠାରୁ ପ୍ରାଚୀନ ପୋଷ୍ଟ ବକ୍ସ**

ପିଲ୍ଲର ପୋଷ୍ଟ ବକ୍ସ ଇଂଲଣ୍ଡର ଔପନ୍ୟାସିକ ଆନ୍ଥୋନି ଟ୍ରୋଲୋପୋ (୧୮୧୫-୮୨)ଙ୍କର ପ୍ରସ୍ତାବ ଅନୁଯାରେ ଇଂଲଣ୍ଡରେ ପ୍ରଥମେ କାର୍ଯ୍ୟକାରୀ ହୋଇଥିଲା । ସବୁଠାରୁ ପ୍ରାଚୀନତମ ପୋଷ୍ଟ ବକ୍ସ ଗୁଏର୍ନସେର ସେଣ୍ଟ ପିଟର ପୋର୍ଟସ୍ଥିତ ୟୁନିୟନ ଷ୍ଟ୍ରୀଟରେ ରହିଥିଲା । ୧୮୫୩ ମସିହା ଫେବ୍ରୁଆରୀ ୮ରେ ଏହି ପୋଷ୍ଟ ବକ୍ସ ଜନସାଧାରଣଙ୍କ ସେବାପାଇଁ ରଖାଯାଇଥିଲା ।

**ପ୍ରାଚୀନତମ ପ୍ରାର୍ଥନା ସଙ୍ଗୀତ**

ସବୁଠାରୁ ପ୍ରାଚୀନ ପ୍ରାର୍ଥନା-ସଙ୍ଗୀତ ହେଉଛି ଜାପାନର କିମିଗାୟୋ । ନବମ ଶତାବ୍ଦୀରୁ ଏହା ପ୍ରଚଳିତ । ଗ୍ରୀସ୍‌ରେ ପ୍ରାଚୀନ ପ୍ରାର୍ଥନା ସଙ୍ଗୀତ ଭାବରେ ହୋଇ-ମୋର୍‌ଙ୍କର କବିତାର ପ୍ରଥମ ଋକିପଦ ଗୃହୀତ ହୋଇଥିଲା ; କିନ୍ତୁ ଏହି କବିତାଟିରେ ୧୫୮ ପଦ ରହିଛି । ଜାପାନ, ଜୋର୍ଡାନ ଏବଂ ସାନମାରିନୋରେ ପ୍ରାର୍ଥନା ସଙ୍ଗୀତ ଚାରିଧାଡ଼ି ଲେଖାଏଁ ରହିଥିଲା ।

**ଅପ୍ରେଲ ଫୁଲ୍ ଦିବସ**

୧୫୬୪ ମସିହାରୁ ଅପ୍ରେଲ ଫୁଲ୍ ଦିବସ ପାଳନ କରାଯାଇ ଆସୁଛି । ପୂର୍ବରୁ ଅପ୍ରେଲ ପହିଲା ବର୍ଷର ପ୍ରଥମ ଦିବସ ଥିଲା । ୧୫୬୪ ଜାନୁଆରୀ ୧ରେ ବର୍ଷର ପ୍ରଥମ ଦିବସ କିନ୍ତୁ ହୋଇଥିଲା । ମାତ୍ର ପରିବର୍ତ୍ତନକୁ ସ୍ମରଣ ରଖିବା ପାଇଁ ପ୍ରତାରଣାର ଗ୍ରିଟିଙ୍ଗସ୍ର ଆଦାନ ପ୍ରଦାନ ହୋଇଥିଲା, ସେହି ଅପ୍ରେଲ ୧ରେ । 'ଫ୍ରାନସ୍‌ରେ ଏହାକୁ 'Poisson d'avril' କୁହାଯାଏ । ଏହାର ଆକ୍ଷରିକ ଅର୍ଥ 'ଏପ୍ରିଲ ଫିସ୍' (April Fish) ।

**୧୦୦ ନିୟୁତ ବର୍ଷର ଡାଇନୋସର୍**

ରୁଷର ଡାଜିକିସ୍ଥାନର ୧୦୦ ନିୟୁତ ବର୍ଷର ଡାଇନୋସରର ଫୁଟ୍‌ପ୍ରିଣ୍ଟ ମିଳିଛି । ପ୍ରାକ୍ ଐତିହାସିକ ସମୟରେ ସମୁଦ୍ର ଜଳରୁ ଏହାର ସନ୍ଧାନ ମିଳିଥିଲା ।

**ନାଗାସାକିରେ ପରମାଣୁ ବୋମା ନିକ୍ଷେପ**

୧୯୪୫ ଅଗଷ୍ଟ ୯ରେ ନାଗାସାକିରେ ପରମାଣୁ ବୋମା ନିକ୍ଷେପ କରାଯିବାର ତିନି ମିନିଟ୍ ପରେ ନଗରର ୨୦୦୦୦ ଫୁଟ ଉଚ୍ଚ ଚୂଡ଼ାଯୁକ୍ତ ପ୍ରାସାଦ ଧୂମ୍ରମୟ ହୋଇ ଉଠିଥିଲା ।

**ଭାରତରେ ସର୍ପ ଦଂଶନରେ ମୃତ୍ୟୁ**

ଭାରତରେ ପ୍ରତିବର୍ଷ ପଚଶ ହଜାର ବ୍ୟକ୍ତି ସାପକାମୁଡ଼ାରେ ମୃତ୍ୟୁବରଣ କରନ୍ତି । ଏହା ବିଶ୍ୱରେ ସର୍ପଦଂଶନର ଶତକଡ଼ା ୫୦ ଭାଗ ।

**ଖଜୁରୀ କୋଳିରୁ ଚିନି ଆଲ୍‌କୋହଲ**

ଇରାକରେ ଖଜୁରୀ କୋଳିରୁ ଅଲ୍‌କୋହଲ, ଚିନି, ଭିନେଗର ଏବଂ ସିରପ ପ୍ରଭୃତି ଉତ୍ପାଦନ କରାଯାଉଛି । ସେଠାରେ ୩ କୋଟି ଖଜୁରୀ ଗଛ ରହିଛି ।

**ବିଶ୍ୱର ସବୁଠାରୁ ପିତା ପଦାର୍ଥ**

ନିଉୟର୍କରେ ବୈଜ୍ଞାନିକମାନେ ଡିନାଟୋନିଅମ୍ ସାକାରାଇଡ୍ ନାମରେ ଏକ ପିତା ପାଉଡର ବାହାର କରିଛନ୍ତି । ଏହା କୁଇନାଇନ୍‌ଠାରୁ ଅଧିକ ପିତା ।

**ମହାନଗରୀରେ ୫ ଶହ ଟନ୍ ଆବର୍ଜନା**

ଭାରତର ୧୪୨ଟି ପ୍ରଥମ ଶ୍ରେଣୀର ନଗରୀମାନଙ୍କରେ ପ୍ରତିଦିନ ଆବର୍ଜନାମୟ ପାଣି ୯୦୦ କୋଟି ଲିଟର ନିଷ୍କାସିତ ହେଉଛି । ୧୦ଲକ୍ଷ ବା ଏହାଠାରୁ ଊର୍ଦ୍ଧ୍ୱ ଜନସଂଖ୍ୟାର ମହାନଗରୀରେ ଦୈନିକ ୫ ଶହ ଟନ୍ ଆବର୍ଜନା ସୃଷ୍ଟି ହେଉଛି ।

**ଚର୍ମରୋଗ ସୃଷ୍ଟିକାରୀ ଗଛ**

ଜାମସେଦପୁରର ଟେଲକୋ କଲୋନୀ ଓ ତାର ଆଖପାଖ ଅଞ୍ଚଳରେ ଏକ ବିଷାକ୍ତ ଗଛର ସଂଖ୍ୟା ବୃଦ୍ଧି ପାଉଥିବା ଯୋଗୁଁ ଚର୍ମରୋଗୀଙ୍କର ସଂଖ୍ୟା ଅଣ ଭାବ ଭାବରେ ବୃଦ୍ଧି ପାଉଛି ।

**ପାଣିପୋକ ଦ୍ୱାରା ମଶା ନିୟନ୍ତ୍ରଣ**

ପାଣିପୋକ 'ଡ଼ିପ୍ଲୋନିଚେ ଇଣ୍ଡିକସ୍' ଗାଡ଼ିଆ ଓ ଧାନବିଲରେ ଜମିଥିବା ପାଣିରେ ରହନ୍ତି । ସେମାନେ ମ୍ୟାଲେରିଆ, ଫାଇଲେରିଆ ଏବଂ ଡେଙ୍ଗୁ ଜ୍ୱରର ଜୀବାଣୁ ବାହୀ ମଶାର ଲାର୍ଭାକୁ ଖାଇଯା'ନ୍ତି । ପୋକର ରଙ୍ଗ ମାଟିଆ ଏବଂ ଏହା ଏକ ସେଣ୍ଟିମିଟର ଲମ୍ବ ଅଟେ ।

**ରାଜ୍ୟରେ ଧୂଆଁପତ୍ର ଉତ୍ପାଦନ**

ଓଡ଼ିଶାରେ ୧୯୮୨-୮୩ ମସିହାରେ ୭୨୦୦ ଟନ୍ ଧୂଆଁପତ୍ର ଉତ୍ପାଦନ ହୋଇଥିଲା । ପରବର୍ତ୍ତୀ ବର୍ଷ ୧୯୮୩-୮୪ ମସିହାରେ ୧୦୨୦୦ ଟନ୍ ଧୂଆଁପତ୍ର ଉତ୍ପାଦନ ହୋଇଛି ।

**ତାଲକୋଟ୍ ବିସ୍ଫୋଟ ଯନ୍ତ୍ର**

ବ୍ରିଟେନ୍‌ର ଏକ କମ୍ପାନୀ ସମ୍ପ୍ରତି ତାଲକୋଟ୍ ବିସ୍ଫୋଟ କରିବାପାଇଁ ଗୋଟିଏ କ୍ଷୁଦ୍ର ଯନ୍ତ୍ର ବାହାର କରିଛନ୍ତି । ଅଳ୍ପ କେତେ ସମୟ ମଧ୍ୟରେ ଏହିଯନ୍ତ୍ର ତାଲକୋଟ୍ ବିସ୍ଫୋଟ କରିପାରୁଛି ।

**ଚାଲିବା ପୂର୍ବରୁ ସନ୍ତରଣ**

ମସ୍କୋର କୋଲ୍ୟା ଏବଂ ନଦ୍ୟା ନାମରେ ୬ ବର୍ଷ ଓ ୪ ବର୍ଷର ଭାଇଭଉଣୀ ଚାଲିଶିଖିବା ପୂର୍ବରୁ ଘଣ୍ଟା ଘଣ୍ଟା ଧରି ପହଁରିପାରୁଥିଲେ । ନଦ୍ୟା ଦେଢ଼ବର୍ଷ ବେଳେ ଏକାଥରକେ ଅଧ କିଲୋମିଟର ପହଁରି ପାରୁଥିଲା । କୋଲ୍ୟା ୨ ବର୍ଷ ବୟସରେ ୧୦ ମିଟର ପାଣିକୁ ଲମ୍ଫଦେଇ ୬ ମିଟର ଗଭୀରତାକୁ ଚାଲିଯାଇ ପାରୁଥିଲା ।

**କଟାହାତ ଯୋଡ଼ ହେଲା**

ମସ୍କୋର ଶଲ୍ୟ ଚିକିତ୍ସା ବିଜ୍ଞାନ କେନ୍ଦ୍ରରେ ଦୁର୍ଘଟଣାରେ ସଂପୂର୍ଣ୍ଣ ଅଲଗା ହୋଇଥିବା ୩୯ ବୟସ୍କ ବ୍ୟକ୍ତିଙ୍କର ଦୁଇହାତକୁ ଅସ୍ତ୍ର ଚିକିତ୍ସା ପରେ ଯୋଡ଼ି ଦିଆ-ହୋଇଛି । ସେ ସୁସ୍ଥ ଅଛନ୍ତି ।

**କୋଲାର ସୁନାଖଣି ବନ୍ଦ ହେବ**

କୋଲାରସ୍ଥିତ ଭାରତବର୍ଷର ସୁନାଖଣିରୁ ୧୫ ବର୍ଷ ପର୍ଯ୍ୟନ୍ତ ସୁନା ଉତ୍ତୋଳନ କରାଯାଇପାରିବ । ନିକଟ ଭବିଷ୍ୟତରେ ଏହି ଖଣି ବନ୍ଦ କରାଯିବାର ସମ୍ଭାବନା ।

**ଆମେରିକାରେ ସନ୍ତ୍ରାସବାଦୀ**

ବିନାକଟକଣାରେ ଆମେରିକାରେ ବହୁ ମାରାତ୍ମକ ଅସ୍ତ୍ରଶସ୍ତ୍ର ବିକ୍ରୀ କରାଯାଉଛି । ଅସ୍ତ୍ରଶସ୍ତ୍ର କିଣିଲାପରେ ଦୁଇ ସପ୍ତାହ ବ୍ୟାପି ବ୍ୟବହାର କରିବାପାଇଁ ବେସରକାରୀ ସ୍କୁଲ ଖୋଲାଯାଇ ଶିକ୍ଷା ଦିଆଯାଉଛି । ସ୍କୁଲରେ ଛୁରିଚାଳନା ଏବଂ ବନ୍ଧୁକ ଓ ମେସିନ୍‌ଗନ୍‌ର ବ୍ୟବହାର ଶିକ୍ଷା ଦିଆଯାଏ ।

**ବାୟୁମଣ୍ଡଳରେ ଅପମିଶ୍ରଣ**

ବାୟୁମଣ୍ଡଳରେ ସଲଫର ଡାଇଅକ୍‌ସାଇଡ୍ ଅପମିଶ୍ରଣ ହେଉଛି । ପନ୍ଦର ବର୍ଷ ପୂର୍ବରୁ ଏତେ ପ୍ରବଳ ଅପମିଶ୍ରଣ ନ ଥିଲା । ଫଳରେ ଜଙ୍ଗଲ ସମ୍ପଦର ନଷ୍ଟ ହେଉଅଛି ।

**ପୃଥିବୀରେ ନଅ ଲକ୍ଷ କର୍କଟରୋଗୀ**

ନିଶାଦ୍ରବ୍ୟ ସେବନ କରୁଥିବାରୁ ପ୍ରତିବର୍ଷ ପୃଥିବୀର ନଅଲକ୍ଷ ମଣିଷ କର୍କଟ ରୋଗ ଭୋଗୁଛନ୍ତି । ଶତକଡ଼ା ୬୦ରୁ ୭୦ ଭାଗ କର୍କଟ ରୋଗୀ ନିଶାଦ୍ରବ୍ୟ ସେବନ ଯୋଗୁଁ ଫୁସ୍‌ଫୁସ୍‌ରେ କର୍କଟରୋଗ ଅନୁଭବ କରନ୍ତି ।

**ଓଡ଼ିଶାରେ ବାଳ ଅପରାଧ ଆଇନ୍**

ସରକାର ୧୯୮୩ ମସିହାରେ ନୂତନ ବାଳ ଅପରାଧ ଆଇନ କାର୍ଯ୍ୟକାରୀ କରିବାକୁ ନିଷ୍ପତ୍ତି ନେଇଥିଲେ । ବାଳ ଅପରାଧୀମାନଙ୍କୁ ସୁସ୍ଥ ପରିବେଶ ମଧ୍ୟରେ ରଖାଯିବାପାଇଁ ଆଇନ୍ ହୋଇଛି ।

**କର୍ମଚାରୀ ଭବିଷ୍ୟନିଧି**

ସମସ୍ତ ଦେଶରେ ୧୨.୫୦ ନିୟୁତ କର୍ମଚାରୀ ଏହି ଯୋଜନାର ପରିସରଭୁକ୍ତ । ୧୯୮୫-୮୬ ବର୍ଷରେ ଭବିଷ୍ୟନିଧି ପାଣ୍ଠି ଜମାଅର୍ଥ ଉପରେ ୧୦.୧୫% ଭାଗ ସୁଧ ମିଳିବ । ପୂର୍ବରୁ ୯.୯୦% ଭାଗ ସୁଧ ମିଳୁଥିଲା ।

**୧୯୮୫-୮୬ରେ ୧୬ କୋଟି ଟନ୍ ଖାଦ୍ୟଶସ୍ୟ**

ଭାରତରେ ୧୯୮୫-୮୬ରେ ପ୍ରାୟ ୧୬ କୋଟି ଟନ୍ ଖାଦ୍ୟଶସ୍ୟ ଉତ୍ପାଦିତ ହେବ । ଏଥିମଧ୍ୟରୁ ଖରିଫ ୮ କୋଟି ୯୦ ଲକ୍ଷ ଟନ୍ ଏବଂ ରେବିଶସ୍ୟ ୭ କୋଟି ୧୦ ଲକ୍ଷ ଟନ ଉତ୍ପାଦିତ ହେବାର ସମ୍ଭାବନା । ଡାଲି ଜାତୀୟ ଶସ୍ୟ ୧ କୋଟି ୪୩ ଲକ୍ଷ ଟନ୍ ଏବଂ ତୈଳବୀଜ ୯୦ ଲକ୍ଷ ଉତ୍ପାଦିତ ହେବ ।

**ଭାରତରେ ଜଳସେଚନ**

ଭାରତରେ ୨୦% ଭାଗ ଜମିରେ ଜଳସେଚନର ସୁବିଧା କରାଯାଇଅଛି । ୬୮ ହେକ୍ଟର ଜମି ଏହାଦ୍ୱାରା ଉପକୃତ ହେବ ।

**ମୂତ୍ରନିୟମର ବିଶୋଧନ**

ଲେଜର ରଶ୍ମି ସାହାଯ୍ୟରେ ମୂତ୍ରନିୟମ ବିଶୋଧନ କରାଯାଉଛି । କାଲି-ଫର୍ଣ୍ଣିଆରେ ଲରେନ୍ସ ଲିଭରମୋର ନ୍ୟାସନାଲ ଲେବରେଟୋରୀରେ ଏହି ପଦ୍ଧତି ବାହାର କରାଯାଇଛି ।

**ଓଡ଼ିଶାରେ ହତ୍ୟାକାଣ୍ଡ**

୧୯୮୦ ମସିହାରେ ୪୮୫, ୧୯୮୧ ମସିହାରେ ୫୨୦, ୧୯୮୨ ମସିହାରେ ୫୧୮, ୧୯୮୩ ମସିହାରେ ୫୫୯ ଏବଂ ୧୯୮୪ ମସିହାରେ ୫୭୭ଟି ହତ୍ୟାକାଣ୍ଡ ଘଟିଛି । ୧୯୮୪ରେ ଧର୍ତ୍ତବ୍ୟ ଅପରାଧ ସଂଖ୍ୟା ୪୬୮୩୨ ।

**ଓଡ଼ିଶାରେ ୧୯୮୦ ଜଣଙ୍କ ଆତ୍ମହତ୍ୟା**

୧୯୮୪ ମସିହାରେ ସର୍ବମୋଟ ୧୯୮୦ ଜଣ ଆତ୍ମହତ୍ୟା କଲେ । ଶତକଡ଼ା ୮୫ ଭାଗ ଏମାନଙ୍କ ମଧ୍ୟରୁ ପୁରୁଷ । ପଶ୍ଚିମବଙ୍ଗରେ ସବୁଠାରୁ ବେଶି ଆତ୍ମହତ୍ୟା କରିଛନ୍ତି । ଏମାନଙ୍କର ସଂଖ୍ୟା ୬ ହଜାର ୫୪୪ ।

**ଓଡ଼ିଶାରେ କୁଷ୍ଠ, କର୍କଟ ଓ ଚକ୍ଷୁରୋଗୀ**

ରାଜ୍ୟରେ ୨ଲକ୍ଷ ୧୯୮୭୮ କୁଷ୍ଠରୋଗୀ, ୨ଲକ୍ଷ ୭୫୯୦୮ କର୍କଟରୋଗୀ, ୩ ଲକ୍ଷ ୭୨ ହଜାର ଚକ୍ଷୁରୋଗୀ, ୧୬୮୨୭ ପୋଲିଓ ରୋଗୀ ଏବଂ ୩ ଲକ୍ଷ ୭୫୬୦୮ ଫାଇଲେରିଆ ରୋଗୀ ଅଛନ୍ତି ।

**ଜେରୁଜେଲମର ମନ୍ଦିର**

ଅବ୍ରାହାମ୍ ଖ୍ରୀଷ୍ଟପୂର୍ବ ୧୯୦୦ରେ କେତେକ ହିବ୍ରୁଙ୍କ ସଙ୍ଗରେ ଧରି ଉର୍ ପରିତ୍ୟାଗ କଲେ । ନଅଶହ ବର୍ଷପରେ ରାଜା ଡେଭିଡ୍‌ଙ୍କ ନେତୃତ୍ୱରେ ସେମାନେ ଧନୀ ଏବଂ ଶକ୍ତିଶାଳୀ ହୋଇଉଠିଲେ । ମିଶରର ଇଉଫ୍ରେଟିସ୍ ଠାରୁ ଲୋହିତ ସାଗର ପର୍ଯ୍ୟନ୍ତ ସେମାନେ ବ୍ୟାପିଗଲେ । ଜେରୁଜେଲମ ରାଜଧାନୀ ହେଲା । ଡେଭିଡ୍ ଏବଂ ତାଙ୍କର ପୁତ୍ର ସୋଲମନ ଏକ ମନ୍ଦିରର ନିର୍ମାଣ କରାଇଲେ । ଟ୍ୟାର ରାଜା ଫୋନେ-ସୀୟ ହିରମ୍ ମନ୍ଦିର ନିର୍ମାଣ ସକାଶେ କାଠ ଯୋଗାଇଥିଲେ । ଏହା ଖ୍ରୀଷ୍ଟପୂର୍ବ ୯୭୫ର ଘଟଣା ।

**ହୋମରଙ୍କର ରଚନାବଳୀ**

ଗ୍ରୀକ କବି ହୋମର୍ ଅନ୍ଧ ଥିଲେ । ସେ ଗ୍ରାମ ଗ୍ରାମ ବୁଲି ପଦ୍ୟ ଆବୃତ୍ତି କରୁଥିଲେ । ସେ ଇଲିୟାର୍ଡ ଏବଂ ଓଡ଼ିସିପାଇଁ ବିଶ୍ୱବିଖ୍ୟାତ ହୋଇଥିଲେ । ଇଲି-ୟାର୍ଡରେ ଟ୍ରୟ ସମ୍ପର୍କରେ ବର୍ଣ୍ଣନା କରାଯାଇଛି ।

### କାର୍ଥେଜ ନଗର ପ୍ରତିଷ୍ଠା

ଫୋନେସୀୟମାନଙ୍କ ଖ୍ୟାତି ବୃଦ୍ଧିପାଇଥିଲା । ସେମାନେ ବି ଧନୀ ହେବାରେ ଲାଗିଲେ । ଟ୍ୟାୟର୍, ତ୍ରିପୋଲି ଏବଂ ଆର୍ବଦରେ ସେମାନେ ବସବାସ କରୁଥିଲେ । ସେମାନଙ୍କର ଜାହାଜସବୁ ଏହି ସମସ୍ତ ବନ୍ଦରରେ ରହୁଥିଲା । ଖ୍ରୀଷ୍ଟପୂର୍ବ ୮୧୩ରେ ଫୋନେସୀୟମାନେ ଉତ୍ତର ଆଫ୍ରିକାରେ କାର୍ଥେଜ ନଗର ସ୍ଥାପନ କରିଥିଲେ ।

### ପ୍ରଥମ ଅଲିମ୍ପିକ୍

ଏବେ ପ୍ରତି ଚାରିବର୍ଷରେ ଥରେ ଅଲିମ୍ପିକ୍ କ୍ରୀଡ଼ା ଅନୁଷ୍ଠିତ ହେଉଛି । ଏହା ବହୁବର୍ଷ ପରେ ୧୮୯୬ ମସିହାରେ ପୁନଶ୍ଚ ଆରମ୍ଭ ହୋଇଥିଲା । ଗ୍ରୀସ୍‌ର ଅଲିମ୍ପିଆ ନଗରରେ ସର୍ବପ୍ରଥମେ ଏହି କ୍ରୀଡ଼ା ଅନୁଷ୍ଠିତ ହୋଇଥିଲା । ପାଞ୍ଚବର୍ଷକୁ ଥରେ କ୍ରୀଡ଼ା ହେଉଥିଲା । ୪୫୮୦୦ ଦର୍ଶକ ଏହି କ୍ରୀଡ଼ା ଦେଖିବାପାଇଁ ଠୁଳ ହେଉଥିଲେ ସେ ସମୟରେ ।

### ରୋମ ନଗରୀର ପ୍ରତିଷ୍ଠା

ଖ୍ରୀଷ୍ଟପୂର୍ବ ୧୦୦୦ରେ ଇଣ୍ଡୋ-ୟୁରୋପୀୟମାନେ ଆଲପାଇନ୍ ଅତିକ୍ରମକରି କେନ୍ଦ୍ର ଓ ମଧ୍ୟ ଇଟାଲୀ ଦଖଲ କରିନେଲେ । ସେମାନେ ସାବିନ୍, ସାମ୍‌ନାଇଟ୍, ଉମ୍ବ୍ରିଅନ୍ ଦଳରେ ଅନ୍ତର୍ଭୁକ୍ତ ଥିଲେ । କେନ୍ଦ୍ର ଇଟାଲୀରେ ଲାଟିନ୍‌ମାନେ ରହିଲେ । ସେମାନେ କ୍ଷୁଦ୍ର କ୍ଷୁଦ୍ର ଗ୍ରାମ ଗଢ଼ିବାରେ ଲାଗିଲେ । ଖ୍ରୀଷ୍ଟପୂର୍ବ ୮୦୦ରେ ତିରିଶଟି ଗ୍ରାମ ହେଲାପରେ ଗୋଟିଏ ନଗରରେ ପରିଣତ କରାଇଥିଲେ । ରୋମୁଲସ୍ ଏବଂ ରେମୁସ୍ ଏହି ରୋମ ନଗରୀ ସ୍ଥାପନ କଲେ । ଖ୍ରୀଷ୍ଟପୂର୍ବ ୭୫୩ରେ ରୋମ ନଗରୀ ପ୍ରତିଷ୍ଠିତ ହୋଇଥିଲା । ଖ୍ରୀଷ୍ଟପୂର୍ବ ୫୦୯ରେ ରୋମ୍ ଏକ ସାଧାରଣତନ୍ତ୍ର ରାଷ୍ଟ୍ରରେ ପରିଣତ ହେବାପୂର୍ବରୁ ସାତଜଣ ରାଜା ଶାସନକାର୍ଯ୍ୟ ପରିଚାଳନା କରିଥିଲେ ।

### ନଅଶ ଲକ୍ଷ ମେଟ୍ରିକ ଟନ୍ ଜାଳେଣି କାଠ ଚୋରି

ଓଡ଼ିଶାରେ ଦୈନିକ ୧ କୋଟି ୪୮ ଲକ୍ଷ ଟନ ଜାଳେଣି କାଠ ଆବଶ୍ୟକ ହେଉଛି । ମାତ୍ର ଦିନକୁ ୬୦ ଲକ୍ଷ ଟନ ଜାଳେଣିକାଠ ମିଳୁଛି । ବାର୍ଷିକ ୯୬୦ ଲକ୍ଷ ମେଟ୍ରିକ୍ ଟନ୍ ଜାଳେଣିକାଠ ଓଡ଼ିଶାରୁ ଚୋରିଯାଉଛି ।

### କେରଳରେ ମାଛଧରା ଜୀବିକା

କେରଳ ରାଜ୍ୟରେ ପ୍ରାୟ ୮ ଲକ୍ଷ ଲୋକ ମାଛଧରି ଜୀବିକା ନିର୍ବାହ କରୁଛନ୍ତି । ସେମାନଙ୍କ ମଧ୍ୟରୁ ୨ ଲକ୍ଷ ଲୋକ ମାଛ ମାରିଥାନ୍ତି । ଅବଶିଷ୍ଟ ଲୋକେ ବଜାରରେ ମାଛ ବିକ୍ରୀ କରିଥାନ୍ତି ।

### ପୃଥିବୀର ସବୁଠାରୁ ବୟସ୍କ ବ୍ୟକ୍ତି

ଜାପାନର ସିଗେଚିଓ ଇଜୁମୀ ହେଉଛନ୍ତି ପୃଥିବୀର ସବୁଠାରୁ ବୟସ୍କ ବ୍ୟକ୍ତି । ତାଙ୍କର ବୟସ ୧୨୦ ବର୍ଷ । ୧୮୬୫ ମସିହାରେ ସେ ଜନ୍ମ ହୋଇଥିଲେ । ଈଶ୍ୱରଙ୍କ କୃପା ଓ ଦୈନିକ ଜାପାନୀ ସୋଚୁ ପାନକରିବା ଫଳରେ ସେ ଦୀର୍ଘଜୀବନ ଲାଭ କରିଛନ୍ତି ।

### ମିସ୍ ଇଣ୍ଡିଆ —୮୫

୧୯୮୫ ଫେସନ ସୋ' ଓ ସୌନ୍ଦର୍ଯ୍ୟ ପ୍ରତିଯୋଗିତାରେ କୁମାରୀ ବିନୀତା ବାସନ୍ ପ୍ରଥମ ହୋଇଛନ୍ତି । ସେ ବାଙ୍ଗାଲୋର ହାଉସିଂ ଡେଭଲପ୍‌ମେଣ୍ଟ କର୍ପୋରେସନ୍‌ରେ ଚାକିରି କରନ୍ତି । ତାଙ୍କୁ ବହୁଅର୍ଥ, ମୂଲ୍ୟବାନ ଉପହାର ଏବଂ ବ୍ରୋଞ୍ଜଟ୍ରଫି ମିଳିଛି ।

**ଇଉରୋପୀୟ ମହାକାଶ ଯାନ**

ଇଉରୋପୀୟ ମହାକାଶ ଏଜେନସି 'ଜିଓଟୋ'-ମହାକାଶଯାନ ମହାକାଶକୁ ପଠାଇଛି । ଏହା ମହାକାଶ ପରିକ୍ରମା କରି ୧୯୮୬ରେ ହେଲି ଧୂମକେତୁ ନିକଟରେ ପହଞ୍ଚିବ । ଧୂମକେତୁର ୫୦୦ କିଲୋମିଟର ଦୂରରେ ରହି ଆଲୋକଚିତ୍ର ଗ୍ରହଣ କରିବ ।

**ବିମାନ ବାହିନୀର ନୂତନ ମୁଖ୍ୟ**

ଏୟାର ମାର୍ଶାଲ ଡି ଏ. ଲାଇଫଟାଇନଙ୍କୁ ଭାରତୀୟ ବିମାନ ବାହିନୀର ମୁଖ୍ୟ ଭାବରେ ନିଯୁକ୍ତ କରାଯାଇଛି । ମାର୍ଶାଲ ଏଲ.ଏମ. କାତ୍ରେଙ୍କ ହୃଦଯନ୍ତ୍ର ବନ୍ଦ ହେବାରୁ ତାଙ୍କ ସ୍ଥାନରେ ଏହି ନିଯୁକ୍ତି ଦିଆଯାଇଛି ।

**ଓଡ଼ିଶାରେ ଶିକ୍ଷାନୁଷ୍ଠାନ**

ଓଡ଼ିଶାରେ ୩୨ ହଜାର ୪୬୫ ପ୍ରାଥମିକ ସ୍କୁଲ, ୩୪୬ କଲେଜ ମଧ୍ୟରୁ ୨୩୯ଟି ବେସରକାରୀ କଲେଜ, ୩ ହଜାର ୧୦୬ ହାଇସ୍କୁଲ, ୪ ହଜାର ୩୨୨ ମଧ୍ୟ ଇଂରାଜୀ ବିଦ୍ୟାଳୟ ରହିଛି । ରାଜ୍ୟରେ ୬ ହଜାର ୭୦୦ଟି ପ୍ରୌଢ଼ଶିକ୍ଷା କେନ୍ଦ୍ର କାର୍ଯ୍ୟକରୁଛି ।

**ରାଜ୍ୟାରାଣୀ ଲଟେରୀରୁ ଲାଭ**

ଓଡ଼ିଶାର ରାଜ୍ୟାରାଣୀ ଲଟେରୀରୁ ୭୧ଟି ଡ୍ରଏ ପରେ ରାଜ୍ୟ ସରକାର ୧ କୋଟି ୪୧ ଲକ୍ଷ ୭୦ ହଜାର ଟଙ୍କା ଲାଭ ପାଇଛନ୍ତି । ଏଥିରୁ ଇନ୍ଡୋର ଷ୍ଟାଡ଼ିୟମ ଏବଂ ବାରବାଟୀ ଷ୍ଟାଡ଼ିୟମର ଉନ୍ନୟନ କରାଯିବ ।

**ଉର୍ ନଗରର ପ୍ରତିଷ୍ଠା**

ଟାଇଗ୍ରୀସ୍ ନଦୀ ଓ ଇଉଫ୍ରେଟିସ୍ ନଦୀର ମିଳନ ସ୍ଥଳରେ ଉର୍ (Ur) ନଗର ଖ୍ରୀଷ୍ଟପୂର୍ବ ୨୧୦୦ରେ ଗଢ଼ିଉଠିଥିଲା । ଏହି ନଗରବାସୀ ପ୍ରଥମେ କୃଷକ ଥିଲେ । ଏହି ଉର୍ ସୁମେରୀୟମାନଙ୍କର ରାଜଧାନୀ ହୋଇଥିଲା । ସେମାନେ କୀଳକାକୃତି (cuneiform) ପଦ୍ଧତିରେ ଲେଖୁଥିଲେ ଏବଂ ଗଣିତରେ ଦକ୍ଷ ମଧ୍ୟ ଥିଲେ । ସେମାନେ ୬୦ ମିନିଟରେ ଏକ ଘଣ୍ଟା ଏବଂ ୬୦ ସେକେଣ୍ଡରେ ଏକ ମିନିଟ ସ୍ଥିର କରିଥିଲେ । ଉର୍ ନଗରରେ ଚନ୍ଦ୍ର ଦେବତାଙ୍କର ମନ୍ଦିର ୨୦୦ ମିଟର ଉଚ୍ଚ ହୋଇଥିଲା ଏବଂ ସୁ'ଏନ ହେଉଛନ୍ତି ସୁମେରୀୟମାନଙ୍କର ଦେବତା ।

**ଲୌହ ଯୁଗର ବିକାଶ**

ଆର୍ଯ୍ୟ ଆନାଟୋଲିଆନ୍ ଉପଦ୍ୱୀପ ଆକ୍ରମଣ କରିବାବେଳେ ଲୌହଯୁଗ ଆରମ୍ଭ ହୋଇଅଛି । ଲାବର୍ଣ୍ଣସ୍, ହିଟିଟେସ୍ ଆର୍ଯ୍ୟମାନଙ୍କର ସମ୍ରାଟ ହେଲେ । ପଶ୍ଚିମରେ Aegean Sea ପର୍ଯ୍ୟନ୍ତ ସାମ୍ରାଜ୍ୟ ବୃଦ୍ଧି ପାଇଲା ଏବଂ ପୂର୍ବରେ ଓ ଦକ୍ଷିଣରେ ସିରିଆ ତଥା ତଉରସ ପର୍ବତମାଳା ପର୍ଯ୍ୟନ୍ତ ସାମ୍ରାଜ୍ୟର ବୃଦ୍ଧି ହୋଇଥିଲା । ସେମାନେ ଲୁହାର ବ୍ୟବହାର କରିବା ଜାଣିଥିଲେ । ପ୍ରଥମେ ଲୁହାପଥରକୁ ଉତ୍ତପ୍ତ କରାଇଲେ ଏବଂ ପରେ ପରେ ସେଥିରୁ ଅସ୍ତ୍ର ପ୍ରଭୃତି ପ୍ରସ୍ତୁତ କରୁଥିଲେ । ମିଶରର ରାଜା ରାମସେସ୍-୨ଙ୍କ ଦ୍ୱାରା ହିଟିଟେସମାନେ ଖ୍ରୀଷ୍ଟପୂର୍ବ ୧୨୮୬ରେ ପରାଜିତ ହେଲେ । ସମ୍ରାଟ ୫୦ ବର୍ଷ ଅତ୍ମଗୋପନ କଲେ । ଖ୍ରୀଷ୍ଟପୂର୍ବ ୨୦୦୦ରୁ ଖ୍ରୀଷ୍ଟପୂର୍ବ ୧୨୦୦ ପର୍ଯ୍ୟନ୍ତ ଲୌହଯୁଗ ସୀମିତ ରହିଥିଲା ।

**ବେବିଲୋନର ଉତ୍ଥାନ**

ସୁମେରୀୟମାନଙ୍କ ଆଧିପତ୍ୟ ଟାଇଗ୍ରିସ୍ ନଦୀ ଉପତ୍ୟକାରେ ଶହ ଶହ ବର୍ଷ ଧରି ରହିଲା । ସେମିଟ୍‌ମାନଙ୍କ ଦ୍ୱାରା ସେମାନେ ପରାଜିତ ହେବାରୁ ଦୁର୍ବଳ ହୋଇ ପଡ଼ିଲେ । ଏହାର ନାମକରଣ ବେବିଲୋନ କରାଯାଇଥିଲା । ହାମ୍ମୁରବି ନୂତନ ରଜା ହୋଇଥିଲେ । ସେ ସମଗ୍ର ମେସୋପଟାମିଆ ଏବଂ ଏସିରିଆର ନାମକରଣ ବେବିଲୋନ ରଖିଲେ । ଶାନ୍ତି ଫେରି ଆସିବା ପରେ ହାମ୍ମୁରବି ନୂତନ ମନ୍ଦିର ପ୍ରତିଷ୍ଠା କଲେ । ନଗରରେ ପ୍ରାଚୀର କରାଇଲେ ଏବଂ ଜଳସେଚନର ବ୍ୟବସ୍ଥା କରାଇଥିଲେ । ସେ ଆଇନ ସଂହିତା (Law code)ର ପ୍ରଚଳନ କରାଇଲେ ବେବିଲୋନରେ । ହାମ୍ମୁରବି ଏକ ବିରାଟ ପାଠାଗାର ମଧ୍ୟ ପ୍ରତିଷ୍ଠା କରାଇଥିଲେ । ଖ୍ରୀଷ୍ଟପୂର୍ବ ୨୦୦୦ରେ ବେବିଲୋନର ଉତ୍ଥାନ ହୋଇଥିଲା ।

**ଇଉରୋପରେ ବ୍ରୋଞ୍ଜଯୁଗ**

ବ୍ରିଟେନ ଏବଂ ତାହାର ପଡ଼ୋଶୀ ରାଷ୍ଟ୍ରରେ ଖ୍ରୀଷ୍ଟପୂର୍ବ ୨୦୦୦ରେ ଆକ୍ରମଣ ଯୋଗୁଁ ଜୀବନଧାରଣର ମାନ ପରିବର୍ତ୍ତିତ ହୋଇଥିଲା । ତମ୍ବା ନିର୍ମିତ ଅସ୍ତ୍ରଶସ୍ତ୍ର ବ୍ୟବହାର କରୁଥିବା ଉପଜାତିର ଲୋକେ ଆକସ୍ମିକ ଭାବେ ଆକ୍ରମଣ କରିଥିଲେ । ସେମାନେ ଖ୍ରୀଷ୍ଟପୂର୍ବ ୧୮୦୦ରେ ଇଉରୋପ ଅଭିମୁଖେ ହିଁ ଅଗ୍ରସର ହେଲେ । ପ୍ରସ୍ତର ଯୁଗର ମଣିଷଙ୍କ ସହ ଉନ୍ନତ ଅସ୍ତ୍ରରେ ଯୁଦ୍ଧ ଚଳାଇ ବିଜୟୀ ହେଲେ । ଏହାପରେ ଇଉରୋପରେ ନୂତନ ସଭ୍ୟତାର ଅଭ୍ୟୁଦୟ ଘଟିଲା । ବ୍ରିଟେନର ଦକ୍ଷିଣାଂଶ ସେମାନେ ଦଖଲ କରିନେଇଥିଲେ । Stonehenge, Silbury ଏବଂ Maiden castle ଗୁଡ଼ିକ ଏହି ସମୟରେ ସେମାନେ ସ୍ଥାପନ କରାଇଥିଲେ ।

**ଜୋମନ୍‌ଙ୍କର ଜାପାନ ଅଧିକାର**

ଜାପାନରେ ପ୍ରଥମ ସଭ୍ୟ ମଣିଷ ହେଉଛନ୍ତି ଜୋମନ । ସେମାନେ ପ୍ରଥମେ ଶିକାରୀ ଥିଲେ ଏବଂ ଦେଶକୁ ହିଁ ଆକ୍ରମଣ କରୁଥିଲେ । ପରେ ଜୋମନମାନେ ଚୀନ ଓ କୋରିଆରୁ ଆସି ସମତଳ ଭୂମିରେ ବସବାସ କରିବାରେ ଲାଗିଲେ ।

**ଅବ୍ରାହାମଙ୍କର ଉର୍ ପରିତ୍ୟାଗ**

ହିବ୍ରୁ ନେତା ଅବ୍ରାହମଙ୍କ ବାସସ୍ଥାନ ହେଉଛି ଉର୍ ନଗରରେ । ସେ ତାଙ୍କ ପରିବାର ସହ କାନାନକୁ ସ୍ଥାନାନ୍ତରିତ ହେଲେ । ଖ୍ରୀଷ୍ଟପୂର୍ବ ୧୯୨୨ରେ ଉର୍ ନଗର ଖୋଳାଯାଇଥିଲା । ଏହା କୋଳାହଳ ପୂର୍ଣ୍ଣ ନଗରରେ ପରିଣତ ହୋଇଗଲା । ଅବ୍ରାହାମ୍ ଏବଂ ତାଙ୍କର ଅନୁଗାମୀମାନେ ହେବ୍ରୋନ୍‌ରେ ଅବସ୍ଥାନ କରିବାରେ ଲାଗିଲେ । ଅବ୍ରାହାମ୍‌ଙ୍କୁ ପ୍ରଥମ ଧର୍ମଯାଜକର ସମ୍ମାନ ଦିଆଯାଇଥାଏ ।

**ମିଶର ହିକ୍‌ସୋଙ୍କଦ୍ୱାରା ଅଧିକୃତ**

ମିଶର ଅକ୍ରମଣର ସମ୍ମୁଖୀନ ହେଲା । ଫାରୋଙ୍କର କ୍ଷମତା ସଙ୍କୁଚିତ ହୋଇ ଆସିଲା । ସମଗ୍ର ଦେଶରେ ବିଶୃଙ୍ଖଳା ଦେଖାଦେଲା । ନ୍ୟୁବୀୟ, ଥେବାନୀୟ ଏବଂ ଲେବାନୀୟମାନେ ମିଶର ଆକ୍ରମଣ କରିବାରେ ଲାଗିଲେ । ବହୁ କଷ୍ଟରେ ଅବସ୍ଥା ଆୟତ୍ତାଧୀନ ହୋଇଥିଲା । ପରିଶେଷରେ ବି ମିଶର ଜନସାଧାରଣ ପୁଣି ଆକସ୍ମିକ ଆକ୍ରମଣର ସମ୍ମୁଖୀନ ହେଲେ । ଏହି ନବାଗତମାନେ ହେଲେ—ହିକ୍‌ସୋ । ସେମାନେ ଗୋପନୀୟ ଅସ୍ତ୍ର ବ୍ୟବହାର ଜାଣିଥିଲେ । ମିଶରୀୟମାନେ ମୁକାବିଲା ଦିଗରେ ଅସମର୍ଥ ହେଲେ । ଶିଙ୍ଗ ଓ ଚମଡ଼ାରେ ନିର୍ମିତ ଧନୁ ଆଣିଥିଲେ ହିକ୍‌ସୋ-

ମାନେ । ଏହାପରେ ସେମାନେ ମିଶରରେ ରାଜତ୍ୱ କରିବାରେ ଲାଗିଥିଲେ । ସେମାନଙ୍କ ରାଜତ୍ୱ ସମୟରେ ଟଲେମିଙ୍କର ଶିଷ୍ଟସନ୍ତାନମାନେ ସେଠାରେ ରହିଗଲେ । ଟାସେ ଅଗଷ୍ଟସ୍ଙ୍କ ସମୟରେ ଟ୍ରିପ୍କଯୋମାନେ ବିତାଡିତ ହେଲେ । ଅଗଷ୍ଟସ୍ ଖ୍ରୀଷ୍ଟପୂର୍ବ ୧୫୨୦ରେ ନୂତନ ସାମ୍ରାଜ୍ୟ ପ୍ରତିଷ୍ଠା କରିଥିଲେ ।

## ଟ୍ରୟ ରାଜଧାନୀ ଖନନ କାର୍ଯ୍ୟ

ଟ୍ରୟ ଆବିଷ୍କାର କରିଥିଲେ ହେନରିଚ୍ ସ୍କଲିମ୍ୟାନ । ଗ୍ରୀକ୍ ଗ୍ରନ୍ଥକାରଙ୍କ ମତରେ କ୍ରୀଟ୍ ଦ୍ୱୀପରେ ମିନୋସ୍ଙ୍କ ରାଜଧାନୀ ନୋନିସିଡ୍ ଅନୁସନ୍ଧାନ କରିବାରେ ଲାଗିଲେ । ଏଥିରେ ସଫଳତା ହାସଲ କରିବା ପୂର୍ବରୁ ତାଙ୍କର ବିୟୋଗ ଘଟିଲା । ତାଙ୍କ ପରେ ଇଂରେଜ ପ୍ରତ୍ନତତ୍ତ୍ୱବିଶାରଦ ସାର୍ ଆର୍ଥର ଇଭାନ୍ସ ଅନୁସନ୍ଧାନରେ ଲାଗିପଡ଼ିଲେ । ୧୯୦୦ ଖ୍ରୀଷ୍ଟାବ୍ଦରେ ସେ ଖନନ କାର୍ଯ୍ୟ ଆରମ୍ଭ କଲେ । ମୃତ୍ୟୁ ପର୍ଯ୍ୟନ୍ତ ଏହି ଅନୁସନ୍ଧାନ କାର୍ଯ୍ୟ ସେ ଚଳାଇଥିଲେ । ଡୋରିଆନଙ୍କର ଆକ୍ରମଣରେ ସେହି ପ୍ରାସାଦ ଦଗ୍ଧ ହୋଇ ଯାଇଥିଲା । ମାତ୍ର ଭୂମିକମ୍ପଦ୍ୱାରା ପୂରାପୂରି ଧ୍ୱଂସବିଧ୍ୱସ୍ତ ହୋଇଥିଲା ଏହି ନଗର ।

## ପ୍ରାଚୀନ ମିଶରରେ ମୃତ୍ୟୁ ପୁସ୍ତକ

ପ୍ରାଚୀନ ମିଶରୀୟମାନେ ବିଶ୍ୱାସ କରୁଥିଲେ ଯେ, ମୃତ୍ୟୁ ପରେ ଯମ (Osiris)ଙ୍କ ସମ୍ମୁଖରେ ଉପସ୍ଥିତ ହେବାକୁ ପଡ଼ିବ । ପାପିରସ୍‌ରେ ଏ ସମ୍ପର୍କରେ ଲିପିବଦ୍ଧ ହୋଇ ରହିଛି । ଏହାକୁ ମୃତ୍ୟୁପୁସ୍ତକ (The Book of the Dead) କୁହାଯାଇଥାଏ । ମମି ସହିତ ତାହା କବର କରାଯାଏ ।

## ଋଗ୍‌ବେଦ ସର୍ବପ୍ରଥମ ହିନ୍ଦୁଧର୍ମଶାସ୍ତ୍ର

ଋଗ୍‌ବେଦର ସ୍ତୋତ୍ରଗୁଡ଼ିକ ଖ୍ରୀଷ୍ଟପୂର୍ବ ଦୁଇ ହଜାର ବର୍ଷ ତଳର ରଚନା । ବିଭିନ୍ନ ଦେବତାଙ୍କ ସମ୍ପର୍କରେ ୧୦୨୮ଟି ସ୍ତୋତ୍ର ଏଥିରେ ରହିଅଛି । ଏହା ହେଉଛି ସର୍ବପ୍ରଥମ ହିନ୍ଦୁ ଧର୍ମଶାସ୍ତ୍ର ।

## ଭାରତରେ ଆର୍ଯ୍ୟ ସଭ୍ୟତା

ଖ୍ରୀଷ୍ଟପୂର୍ବ ୨୦୦୦ରେ ଆର୍ଯ୍ୟମାନେ ଭାରତବର୍ଷର ସୀମା ମଧ୍ୟରେ ପ୍ରବେଶ କଲେ । ପ୍ରାଚୀନ ଅଧିବାସୀଙ୍କ ସହିତ ସେମାନଙ୍କର ଦ୍ୱନ୍ଦ୍ୱ ହେଲା । ଆର୍ଯ୍ୟମାନେ ଯୁଦ୍ଧରେ ଜୟଲାଭ କରିଥିଲେ । ସେମାନେ ଗଙ୍ଗା ଓ ଯମୁନା ନଦୀ ଆଡ଼କୁ ଅଗ୍ରସର ହେଲେ । ଖ୍ରୀଷ୍ଟପୂର୍ବ ୧୫୦୦ରେ ସ୍ଥାନ ପରିବର୍ତ୍ତନ କରାହୋଇଥିଲା । ପରବର୍ତ୍ତୀ ୫୦୦ ବର୍ଷ ମଧ୍ୟରେ ଆର୍ଯ୍ୟମାନେ ଶକ୍ତିଶାଳୀ ରାଜାଙ୍କ ଅଧୀନରେ ରହିଲେ ।

## ୨୫୫୪ ଗୋଟି ଥଇଥାନ

ଓଡ଼ିଶାରେ ୧୯୮୦ ମସିହାରୁ ୧୯୮୪ ମସିହା ମଧ୍ୟରେ ୨୫୫୪ ଗୋଟି ଶ୍ରମିକଙ୍କୁ ଥଇଥାନ କରାଯାଇଛି । ଏଥିପାଇଁ କେନ୍ଦ୍ର ସରକାରଙ୍କ ଅନୁଦାନ ୫ କୋଟି ୪୧ ଲକ୍ଷ ଟଙ୍କା ଓ ରାଜ୍ୟ ସରକାରଙ୍କ ପକ୍ଷରୁ ୫ କୋଟି ୯୧ ଲକ୍ଷ ଟଙ୍କା ଖର୍ଚ୍ଚ ହୋଇଛି ।

## ମ୍ୟାଲେରିଆର ନୂଆ ଔଷଧ

ମ୍ୟାଲେରିଆ ପାଇଁ ଆୟୁଷ ୬୪ ନାମରେ ଏକ ଆୟୁର୍ବେଦ ଔଷଧ ବାହାରିଛି । ଶୀଘ୍ର ଏହା ମ୍ୟାଲେରିଆ ରୋଗରୁ ଆରୋଗ୍ୟ କରାଇ ପାରୁଛି ।

**କମ୍ପ୍ୟୁଟର କବିତା ଲେଖୁଛି**

ଆମେରିକାର ଅଟ: ଟି: ଏ: କମ୍ପାନୀର କମ୍ପ୍ୟୁଟର ଷ୍ଟଲିକା ଶ୍ରୀମତୀ କେଥ୍‌ଅର ପିକିଟି କମ୍ପ୍ୟୁଟର ଯୋଗେ କବିତା ଲେଖିବାର ଉପାୟ ବାହାର କରିଛନ୍ତି । ମିନିଟକୁ କମ୍ପ୍ୟୁଟର ଦେଢ଼ଶହ କବିତା ଲେଖିପାରୁଛି ।

**୧୩ ବର୍ଷରେ ଅନର୍ସ ଡିଗ୍ରୀ**

ତେର ବର୍ଷ ବାଳିକା ଉଥ ଲରେନ୍‌ଯି ଅକ୍‌ସଫୋର୍ଡ ବିଶ୍ୱବିଦ୍ୟାଳୟରୁ ଅନର୍ସ ଡିଗ୍ରୀ ପାଇଛନ୍ତି । ଦୁଇଶହ ଗ୍ରାଜୁଏଟ୍ ପ୍ରାର୍ଥୀଙ୍କ ମଧ୍ୟରେ ସେ ସର୍ବୋଚ୍ଚ ନମ୍ବର ରଖିଛନ୍ତି ।

**ବିଲେଇ କଥା କହୁଛି**

ତାମିଲନାଡୁର ଦାପକ ସହରରେ ଜଣେ ବ୍ୟାଙ୍କ ଅଫିସରଙ୍କ ଝିଅ ଦେବୀ ଗୋଟିଏ ବିଲେଇ ପାଳିଛନ୍ତି । ବିଲେଇଟି ଦେବୀଙ୍କଠାରୁ ତାମିଲରେ କେତୋଟି କଥା କହିବାକୁ ଶିଖିଲାଣି ।

**କମ୍ପ୍ୟୁଟରର ଦ୍ରୁତ ହିସାବ**

ଜାପାନର ଫୁଜିତୁ କମ୍ପାନୀ ଏକ ଅତ୍ୟାଧୁନିକ କମ୍ପ୍ୟୁଟର ବାହାର କରିଛନ୍ତି । ପ୍ରତି ସେକେଣ୍ଡରେ ପ୍ରାୟ ଶହେ କୋଟି ହିସାବ କରିପାରେ ।

**ଯାନ୍ତ୍ରିକ ହୃଦଯନ୍ତ୍ର ୧୯୯୦ ରେ ମିଳିବ**

୧୯୯୦ ମସିହାବେଳେ ହୃଦରୋଗୀଙ୍କ ପକ୍ଷରେ ପୂର୍ଣ୍ଣାଙ୍ଗ କୃତ୍ରିମ ହୃଦଯନ୍ତ୍ର ମିଳି ପାରିବ । ଏହା ବଜାରକୁ ୧୯୯୧ ମସିହାରେ ବିକ୍ରି ପାଇଁ ଯିବ ।

**ମୁଣ୍ଡପିଛା ଆୟ**

ଓଡ଼ିଶାରେ ଗତ ବର୍ଷ ମୁଣ୍ଡ ପିଛା ଆୟ ୫୭୬ ଟଙ୍କା ଥିବାବେଳେ ଭାରତବର୍ଷରେ ମୁଣ୍ଡ ପିଛା ଆୟ ୭୪୯ ଟଙ୍କା ହୋଇଥିଲା ।

**ଦେଶରେ ୭୩ ହଜାର ଟନ୍ ୟୁରେନିୟମ ଅକ୍‌ସାଇଡ୍**

ଭାରତରେ ୭୩ ହଜାର ଟନ୍ ୟୁରେନିୟମ ଅକ୍‌ସାଇଡ୍ ଚିହ୍ନିତ ହୋଇଛି । ଶତକଡ଼ା ୮୦ ଭାଗ ବିହାରର ସିଂହଭୂମି ଜିଲ୍ଲାରେ ୟୁରେନିୟମ ଅକ୍‌ସାଇଡ୍ ରହିଅଛି ।

**ଭାରତରେ ରାସ୍ତା ଦୁର୍ଘଟଣା**

ଭାରତବର୍ଷରେ ପ୍ରତି ଦଶ ହଜାର ଯାନରେ ଦୁର୍ଘଟଣା ହାର ଶତକଡ଼ା ୫୭ଭାଗ ଥିବାବେଳେ ପାଶ୍ଚାତ୍ୟ ଦେଶରେ ଶତକଡ଼ା ୫ ରୁ ୭ ଭାଗ ଦୁର୍ଘଟଣା ହାର । ଆମେରିକାର ୧୪, ପଶ୍ଚିମ ଜର୍ମାନୀରେ ୧୩.୭, ସ୍ୱିଡେନରେ ୪.୮ ହେଉଛି ଦୁର୍ଘଟଣା ହାର ।

**ଚୀନର ସୈନ୍ୟସଂଖ୍ୟା ହ୍ରାସ**

ଚୀନ୍ ଚଳିତ ବର୍ଷ ପିପୁଲସ ଲିବରେସନ୍ ଆର୍ମିରୁ ଲକ୍ଷେ ନିୟମିତ ସୈନ୍ୟ ବାହାର କରାଇ ମୋଟ ୨୦ ଲକ୍ଷ ସୈନ୍ୟ କମାଇବାକୁ ସ୍ଥିର କରିଛି । ଏବେ ଚୀନରେ ୪୧ ଲକ୍ଷ ସୈନ୍ୟ ରହିଛନ୍ତି ।

**ଶତକଡ଼ା ୧୯ ଶିଶୁ ଅନାଥ ଅବହେଳିତ**

ଓଡ଼ିଶାରେ ଶତକଡ଼ା ୧୯ ଭାଗ ଶିଶୁ ଅନାଥ ଏବଂ ସେମାନେ ଅବହେଳିତ ଅବସ୍ଥାରେ ରହୁଛନ୍ତି ।

**ମିନି ମାଇକ୍ରୋ ହାଇଡ୍ରୋ ପ୍ରୋଜେକ୍ଟ**

ଛୋଟ ଛୋଟ ଝରଣା, ସବୁଦିନ ପାଣି ରହୁଥିବା ନାଳ ଓ କେନାଲରୁ ପାଣି ପଡୁଥିବା ସ୍ଥାନଗୁଡ଼ିକରେ କ୍ଷୁଦ୍ର ବିଦ୍ୟୁତ୍ ଉତ୍ପାଦନ ପ୍ରକଳ୍ପ (ମିନି ମାଇକ୍ରୋ ପ୍ରୋଜେକ୍ଟ) ପ୍ରତିଷ୍ଠା କରାଯାଇ ଗାଁ ଗହଳିକୁ ବିଦ୍ୟୁତ ସରବରାହ କରାହେବ ।

**ୟୁନିସେଫ କାର୍ଯ୍ୟକ୍ରମ**

ୟୁନିସେଫ ପକ୍ଷରୁ ସ୍କୁଲଗୁଡ଼ିକରେ ପାଇଖାନା, ପରିସ୍ରାଗାର, ବାଲବାଡ଼ି, ନଳକୂପ, ପାଇପ ଦ୍ୱାରା ପାନୀୟ ଜଳ ବ୍ୟବସ୍ଥା, ସର୍ବସାଧାରଣ ପାଇଖାନା ଏବଂ ସଂକ୍ରାମକ ରୋଗର ପ୍ରତିଷେଧକ ବ୍ୟବସ୍ଥା ଲାଗି ଟିକା ଦିଆଯିବା ପ୍ରଭୃତି ଉଲ୍ଲେଖଯୋଗ୍ୟ କାର୍ଯ୍ୟକ୍ରମ କରାଯାଉଛି ।

**ସୁପ୍ରିମ କୋର୍ଟରେ ବାକିଥିବା ମୋକଦ୍ଦମା**

ଭାରତର ସୁପ୍ରିମ କୋର୍ଟରେ ୧୪୮୮୯୧ଟି ମୋକଦ୍ଦମା ବିଚାର ହେବାକୁ ପଡ଼ି ରହିଛି ।

**ଔଷଧପତ୍ର ସମ୍ପର୍କରେ ବିଶ୍ୱକୋଷ**

ବାଙ୍ଗାଲୋରରୁ ଭାରତୀୟ ଔଷଧପତ୍ର ସମ୍ପର୍କରେ ନୂତନ ବିଶ୍ୱକୋଷ (ଏନସାଇକ୍ଲୋପେଡ଼ିଆ) ଛଅ ଖଣ୍ଡରେ ପ୍ରକାଶିତ ହେବାକୁ ଯାଉଛି । ପ୍ରଥମ ଭାଗରେ ଭାରତୀୟ ଭେଷଜ ଚିକିତ୍ସା ପ୍ରଣାଳୀ ସମ୍ପର୍କରେ ବିବରଣୀମାନ ରହିଛି ।

**ଭାରତରେ କଳାଧନ**

ନ୍ୟାସନାଲ ଇନଷ୍ଟିଚ୍ୟୁଟ ଅଫ୍ ପବ୍ଲିକ୍ ଫାଇନାନ୍ସ ଏଣ୍ଡ ପଲିସି ପକ୍ଷରୁ ପ୍ରକାଶିତ ଏକ ରିପୋର୍ଟରେ ଭାରତବର୍ଷରେ କଳାଧନ ୩୭ ହଜାର କୋଟି ହୋଇଥିବା ଦର୍ଶାଯାଇଛି । ୧୯୭୫-୭୬ ରେ ଏହା ୧୦ ହଜାର କୋଟି ରହିଥିଲା ।

**ବିହାରରେ ନରକଙ୍କାଳ ବ୍ୟବସାୟ**

ବିହାରରେ ନରକଙ୍କାଳ ବ୍ୟବସାୟ ବୃଦ୍ଧି ପାଉଛି । ବିଦେଶରେ ଡାକ୍ତରୀ ଗବେଷଣା ଲାଗି ଖପୁରୀ ଓ କଙ୍କାଳର ଚାହିଦା ବୃଦ୍ଧି ପାଉଥିବାରୁ ବିହାରରେ ସେମାନ ବ୍ୟବସାୟ ଚାଲିଛି । ରାଜ୍ୟରେ ୨୦ ଜଣ ଲାଇସେନସଧାରୀ ବ୍ୟବସାୟୀ ରହିଛନ୍ତି ଏବଂ ଅନ୍ୟମାନେ କିନ୍ତୁ ଗୋପନରେ ଏସବୁ ଚାଲାଣ କରୁଛନ୍ତି ।

**ସୌର ଶକ୍ତିରେ ଚାଳିତ ଓ୍ୱାଟର ହିଟର**

ରାଉରକେଲା ଇସ୍ପାତ କାରଖାନାରେ ପ୍ରୋଜେକ୍ଟ ଇଞ୍ଜିନିୟରିଂ ବିଭାଗ ପକ୍ଷରୁ ସୌର ଶକ୍ତି ୱାଟର ହିଟର ନିର୍ମାଣ କରାଯାଇଛି । ଏହି ଯନ୍ତ୍ରଦ୍ୱାରା ବିଦ୍ୟୁତ୍‌ଶକ୍ତି ସଞ୍ଚୟ କରାଯାଇ ଚିକିତ୍ସାଳୟକୁ ଉତ୍ତପ୍ତ ଜଳ ଯୋଗାଇ ଦିଆହୋଇପାରିବ ।

**ଓଡ଼ିଶାରେ ବିଦ୍ୟୁତ୍‌କରଣ**

ଓଡ଼ିଶାରେ ଶତକଡ଼ା ୦୮.୬ ଭାଗ ଗ୍ରାମ ବିଦ୍ୟୁତ୍‌କରଣ ହୋଇଛି । ଦେଶରେ ଶତକଡ଼ା ୬୨ ଭାଗ ଗ୍ରାମ ବିଦ୍ୟୁତ୍‌କରଣ ହୋଇଅଛି ।

**ଦେଶରେ ପ୍ରଚଳିତ ନୋଟର ମୂଲ୍ୟ**

ଜୁନ୍ ୧୧ ରେ ଶେଷ ହୋଇଥିବା ସପ୍ତାହରେ ମୋଟ ୨୫୦୩୩ କୋଟି ୬୯ ଲକ୍ଷ ଟଙ୍କା ମୂଲ୍ୟର ନୋଟ ପ୍ରଚଳନ ହୋଇଛି । ଏହା ପୂର୍ବ ସପ୍ତାହ ତୁଳନାରେ ୪୦୮ କୋଟି ୨୬ ଲକ୍ଷ ଟଙ୍କା କମ୍ । ଏହି ସପ୍ତାହରେ ବଜାରକୁ ଛଡ଼ାଯାଇଥିବା ନୋଟର ପରିମାଣ ତା' ପୂର୍ବ ସପ୍ତାହ ତୁଳନାରେ ୩୯୧ କୋଟି ୧୪ ଲକ୍ଷ ଟଙ୍କା ହ୍ରାସ ପାଇଛି । ତାହାର ପୂର୍ବ ସପ୍ତାହରେ ୪୩ କୋଟି ୯୮ ଲକ୍ଷ ଟଙ୍କାର ନୂତନ ନୋଟ ବଜାରକୁ ଛଡ଼ା ଯାଇଥିଲା ।

**ବେଙ୍ଗ ଗୋଡ ରପ୍ତାନୀ**

ଭାରତ ଓ ବଙ୍ଗଳା ଦେଶ ବିଦେଶକୁ ବହୁ ପରିମାଣରେ ବେଙ୍ଗ ଗୋଡ ରପ୍ତାନୀ କରୁଛନ୍ତି । ୧୯୮୪ ରେ ବିଶ୍ୱରେ ୨୦ କୋଟି ବେଙ୍ଗ ମରା ହୋଇଥିଲା । ଏହାର ତିନି ଚତୁର୍ଥାଂଶ ଭାରତ ଓ ବଙ୍ଗଳା ଦେଶରୁ ବିଦେଶକୁ ରପ୍ତାନୀ କରାଯାଇଥିଲା ।

**ଓଡ଼ିଶାରେ ରିଜର୍ଭ ବ୍ୟାଙ୍କର କାରବାର**

ଭୁବନେଶ୍ୱରର ରିଜର୍ଭ ବ୍ୟାଙ୍କ ଦ୍ୱାରା ୧୯୮୫ ଜାନୁଆରୀ ଶେଷ ସୁଦ୍ଧା ୩୦୧୭୨ଟି ଚେକ୍ ଏବଂ ୧୧୩୯୨୧୫ ୧୩୨ ଟଙ୍କା ୧୫ ପଇସା କାରବାର ହୋଇଛି ।

**ଭାରତର ଇଞ୍ଜିନିୟରିଂ ଦ୍ରବ୍ୟ ରପ୍ତାନୀ**

୧୯୮୪-୮୫ ଆର୍ଥିକ ବର୍ଷର ପ୍ରଥମ ନଅ ମାସ ମଧ୍ୟରେ ୮୪୫ କୋଟି ଟଙ୍କାର ଇଞ୍ଜିନିୟରିଂ ଦ୍ରବ୍ୟ ବିଦେଶକୁ ରପ୍ତାନୀ କରିଛି । ୧୯୮୩-୮୪ ଆର୍ଥିକ ବର୍ଷର ସେହି ସମୟ ମଧ୍ୟରେ ୭୪୫ କୋଟି ଟଙ୍କାର ଦ୍ରବ୍ୟ ରପ୍ତାନୀ ହୋଇଥିଲା ।

**ଦେଶରେ ୧୦୭୨ ମୁନାଫାଖୋର ଦଣ୍ଡିତ**

ଗତବର୍ଷ କଳାବଜାର ସୃଷ୍ଟି କରୁଥିବା ଅସାଧୁ ବ୍ୟକ୍ତିମାନଙ୍କ ମଧ୍ୟରୁ ୮୭୨୨ ଜଣଙ୍କୁ ଗିରଫ କରାଯାଇ ୪୮୫୪ ଜଣଙ୍କୁ କୋର୍ଟକୁ ଚାଲାଣ କରାଯାଇଥିଲା । ୧୯୫୫ ମସିହା ଅତ୍ୟାବଶ୍ୟକୀୟ ଦ୍ରବ୍ୟ ନିୟନ୍ତ୍ରଣ ଆଇନ ଅନୁଯାରେ ୧୦୭୨ ବ୍ୟକ୍ତିଙ୍କୁ ଦଣ୍ଡିତ କରାଯାଇଛି ।

**୨୦୫୦ ମସିହାରେ ଭାରତର ଲୋକସଂଖ୍ୟା**

ଭାରତର ଏବେ ଲୋକସଂଖ୍ୟା ହେଉଛି ୭୪ କୋଟି । ୨୦୫୦ ମସିହାରେ ଏହା ୧୫୧ କୋଟି ୩୦ ଲକ୍ଷ ହୋଇ ଯାଇଥିବ । ଚୀନର ଲୋକସଂଖ୍ୟା ୧୦୦ କୋଟିରୁ ଏହା ଯଥେଷ୍ଟ ବେଶୀ ।

**ଜାପାନରେ ଯନ୍ତ୍ର ମାନବ**

ଜାପାନରେ ଯନ୍ତ୍ରମାନବ 'ରୋବର୍ଟ' ଏବେ କଳକାରଖାନାଗୁଡ଼ିକରେ ବ୍ୟବହୃତ ହେଉଛି । କୋଠାଘର ନିର୍ମାଣରେ ରୋବର୍ଟ କାର୍ଯ୍ୟ କରୁଛି ।

**ନର୍ସମାନେ ମୁଦି ପିନ୍ଧିବା ଅନୁଚିତ**

ବ୍ରିଟେନ୍‌ର ସେଣ୍ଟ୍ରାଲ ପବ୍ଲିକ ହେଲ୍‌ଥ ଲେବୋରେଟୋରୀ ସତର୍କ କରିଦେଇଛି ମୁଦି ତଳେ ଜୀବାଣୁ ରହୁଥିବାରୁ ନର୍ସମାନେ ମୁଦି ପିନ୍ଧିବା ଉଚିତ ନୁହେଁ ।

**ଗ୍ରିଗୋଡ଼ିଆ କୁକୁଡ଼ା ଛୁଆ**

ପଞ୍ଜାବ କୃଷି ବିଶ୍ୱବିଦ୍ୟାଳୟର କୁକୁଡ଼ାପାଳନ କେନ୍ଦ୍ରରେ ଏକ ଗ୍ରିଗୋଡ଼ିଆ କୁକୁଡ଼ା ଛୁଆ ଜନ୍ମ ହୋଇଛି । ତାହାର ଓଜନ ୩୪ ୪ ଗ୍ରାମ । ସେ ସମ୍ପୂର୍ଣ୍ଣ ସୁସ୍ଥ ।

**ଜନବହୁଳ ଜିଲ୍ଲା**

ପଶ୍ଚିମବଙ୍ଗର ଚବିଶ ପ୍ରଗଣା ଜିଲ୍ଲା ଭାରତର ଅନ୍ୟ ସବୁ ଜିଲ୍ଲା ତୁଳନାରେ ଜନବହୁଳ । ଏହି ଜିଲ୍ଲାର ଜନସଂଖ୍ୟା ସ୍ୱିଡେନ ଓ ଗ୍ରୀସଠାରୁ ଅଧିକ ।

**ଜାପାନରେ ସମ୍ବାଦପତ୍ରର ଚାହିଦା**

ଜାପାନ ଦେଶରେ ୧୧ କୋଟି ୯୦ ଲକ୍ଷ ବ୍ୟକ୍ତି ନିୟମିତ ସମ୍ବାଦପତ୍ର ପଢ଼ିଥାନ୍ତି । ୧୨୫ଟି ଦୈନିକ ସମ୍ବାଦପତ୍ରର ୬ କୋଟି ୮୦ ଲକ୍ଷ ସଂସ୍କରଣ ପ୍ରତିଦିନ ବଜାରରେ ସେମାନେ ସମର୍ଥ ହୁଅନ୍ତି ।

## ଖାଡ଼ି ଗ୍ଭଳନା ପାଇଁ ରଣୀ ଦଣ୍ଡିତ

ସ୍ପେନର ରଣୀ ସୋଫିଆ ମାଲୋର୍କା-ଦ୍ୱୀପର ମ୍ୟାରି ଭେଣ୍ଟଠାରେ ଥିବା ଗ୍ରୀଷ୍ମ-କାଳୀନ ରାଜପ୍ରାସାଦ ଘଣ୍ଟାକୁ ୯୦ କିଲୋମିଟର ବେଗରେ ଗାଡ଼ି ଚଳାଉଥିବାରୁ ପୋଲିସ ଦ୍ୱାରା ଧରାପଡ଼ି ପ୍ରାୟ ୯୦୦ ଟଙ୍କା ଜୋରିମାନା ଦେଇଥିଲେ । ସେହି ଅଞ୍ଚଳରେ ଘଣ୍ଟାକୁ ୫୫ କି: ମି: ବେଗରେ ଗାଡ଼ି ଚଳାଯିବାର କଟକଣା ରହିଛି ।

## ଗଧିଆ ମେଳରେ ବଢ଼ିଥିବା ବାଳକ

ବଣରେ ଗଧିଆ ମେଳରେ ବାଳକ 'ଭାଲୁ' ବଢ଼ି ଆସିଥିଲା । ୧୯୭୬ରେ ସୁଲତାନପୁରରେ ଠାକୁର ଭାଲୁକୁ ଜଙ୍ଗଲରୁ ନେଇ ଆସିଥିଲେ । ସେତେବେଳେ ତା'ର ବୟସ ଆଠ ବର୍ଷ ହୋଇଥିଲା । ନଅବର୍ଷ ମଧ୍ୟରେ ସେ ଗୋଟିଏ ଶବ୍ଦ କହିବା ଶିଖି ନ ଥିଲା । ମାନବ ସମାଜ ସହିତ ସାମିଲ କରି ନ ପାରି ଶେଷରେ ପଡ଼ି ୧୯୮୫ ଫେବୃୟାରୀରେ ଭାଲୁ ମୃତ୍ୟୁବରଣ କରିଛି ।

## ପୃଥିବୀରେ ସୁନା ସଞ୍ଚିତ

ବିଶ୍ୱରେ ମୋଟ ୯୩ ହଜାର ଟନ୍ ସୁନା ରହିଛି । ଏହା'ର ୪୫ % ମୁଦ୍ରା ଓ ଅର୍ଥ ବିଭାଗୀୟ କର୍ତ୍ତୃପକ୍ଷଙ୍କ ନିକଟରେ ସଞ୍ଚିତ ରହିଥିବାବେଳେ ୩୫ % ସୁନା ଅଳଙ୍କାର ଓ ଶିଳ୍ପ କ୍ଷେତ୍ରରେ ବିନିଯୋଗ ହେଉଛି । ଅବଶିଷ୍ଟ ୨୦ % ସୁନା ଅର୍ଥ ଲଗାଣ ମହଜୁଦ ରହିଛି । ଭାରତରେ ୪୭୦୦ ଟନ୍ ସୁନା ଅଳଙ୍କାର ଭାବରେ ସଞ୍ଚିତ ଅଛି ।

## ପିଆନୋ ତିଆରିରେ ଜାପାନ ପ୍ରଥମ

ଉନ୍ନତ ଧରଣର ପିଆନୋ ତିଆରି କରିବାରେ ଜାପାନ ବିଶ୍ୱରେ ପ୍ରଥମ ।

## ଉନ୍ନତ ଧରଣର ବତକ

ଇଂଲଣ୍ଡରେ ଉନ୍ନତ ଧରଣର ବତକ ସୃଷ୍ଟି ହୋଇଛି । ଏହି ଶ୍ରେଣୀର ବତକ ଅଳ୍ପ ବୟସରେ ଅଣ୍ଡା ଦିଏ ଏବଂ ଦ୍ରୁତ ଭାବେ ବଂଶ ବୃଦ୍ଧି କରେ । ଏହାକୁ ସି. ଭି. ସୁପର ଏମ୍ କୁହାଯାଏ ।

## ଆୟତନ ତୁଳନାରେ ବାଂଲା ଦେଶର ଜନସଂଖ୍ୟା ଅଧିକ

ପୃଥିବୀରେ ବଙ୍ଗଳା ଦେଶର ଜନସଂଖ୍ୟାର ଘନତ୍ୱ ସର୍ବାଧିକ । ସେହିଦେଶରେ ପ୍ରତି ବର୍ଗ କିଲୋମିଟର ଅଞ୍ଚଳରେ ୬୬୪ ଜଣ ମଣିଷ ବାସ କରୁଥିବାବେଳେ ଭାରତରେ ୨୨୨ ଜଣ ବାସ କରିଥାନ୍ତି ।

## ଓଡ଼ିଶାରେ ପ୍ରଥମଥର ମୂତ୍ରାଶୟ ରୋପଣ

ବୁର୍ଲାସ୍ଥିତ ସୁରେନ୍ଦ୍ର ସାଏ ମେଡ଼ିକାଲ କଲେଜର ଡାକ୍ତରମାନେ ଅର୍ଜୁନ ମିଶ୍ରଙ୍କର ମୂତ୍ରାଶୟ ରୋପଣ କାର୍ଯ୍ୟରେ ସର୍ବପ୍ରଥମ ସଫଳତା ହାସଲ କରିଛନ୍ତି ।

## ପିଆଜ ଓ ରସୁଣର ବ୍ୟାଧି ନିରୋଧକ ଶକ୍ତି

ପିଆଜ ରସମିଶ୍ରିତ ସୁରା ପାନ କଲେ ଜ୍ୱର, ହାଇଜା ଓ ଝାଡ଼ା ରୋଗରୁ ମୁକ୍ତି ମିଳେ । ଏକ ହଜାର ଭାଗରେ ଏକରୁ ଦୁଇଭାଗ ରସୁଣ ରସ ହଇଜା, ଟାଇଫଏଡ୍, ଝାଡ଼ାବାନ୍ତି ଆଦିର ଜୀବାଣୁ ନାଶ କରିଥାଏ । ରସୁଣରୁ ବୈଜ୍ଞାନିକ ଚେଷ୍ଟର ଜେ. କାଭାଲିଟୋ 'ଅଲଫିନ' ପ୍ରସ୍ତୁତ କରାଇଥିଲେ ।

### ହାଇକୋର୍ଟରେ ୨୪ ହଜାର ବିଚାରାଧୀନ ମୋକଦ୍ଦମା

ଓଡ଼ିଶା ହାଇକୋର୍ଟରେ ଗତ ଜାନୁଆରୀ ମାସ ପହିଲା ସୁଦ୍ଧା ୨୪ ହଜାର ୨ ଶହ ୧[illegible]ଟି ମୋକଦ୍ଦମା ବିଚାର ନହୋଇ ପଡ଼ିରହିଛି । ୮୫୬ଟି ମୋକଦ୍ଦମା ୧୦ ବର୍ଷରୁ ଅଧିକ କାଳ, ୪ ହଜାର ୮ ଶହ ୨ଟି ମୋକଦ୍ଦମା ୫ ବର୍ଷରୁ ଅଧିକ କାଳ, ୨ ହଜାର ୭ ଶହ ୮ଟି ମୋକଦ୍ଦମା ୪ ବର୍ଷରୁ ଅଧିକ କାଳ, ୩ ହଜାର ୧୫୧ଟି ମୋକଦ୍ଦମା ୩ ବର୍ଷରୁ ଅଧିକ କାଳ, ୪ ହଜାର ୨୮୦ଟି ମୋକଦ୍ଦମା ୨ ବର୍ଷରୁ ଅଧିକ କାଳ ଏବଂ ୮ ହଜାର ୮୪୦ଟି ମୋକଦ୍ଦମା ୧ ବର୍ଷରୁ ଅଧିକ କାଳ ପଡ଼ିରହିଛି ।

### ଦୁର୍ଘଟଣା ଜନିତ ମୃତ୍ୟୁ

୧୯୮୦ରୁ ୧୯୮୫ ମସିହା ମଧ୍ୟରେ ଓଡ଼ିଶାରେ ୨୫ ହଜାର ୮ ଶହ ୯୬ଟି ଯାନବାହନ ଜନିତ ଦୁର୍ଘଟଣା ଘଟି ୩ ହଜାର ୪ ଶହ ୯୭ ଜଣ ପ୍ରାଣ ହରାଇଛନ୍ତି । ୧୯୮୪-୮୫ରେ ୭ ହଜାର ୫୬ଟି ରାସ୍ତା ଦୁର୍ଘଟଣାରେ ଏକ ହଜାର ୫୭ ଜଣଙ୍କର ମୃତ୍ୟୁ ହୋଇଛି ।

### ଜୀବନ୍ତ କ୍ୟାଲେଣ୍ଡର

ବେଲଗ୍ରେଡର ଜଣେ ବାଳକ କ୍ୟାଲେଣ୍ଡର ଭଳି ଆଗାମୀ ବା ବିଗତ ଦିନମାନଙ୍କ ବିଷୟରେ ସଠିକ୍ ସୂଚନା ଦେଉଥିବା ବିଷୟ ଜଣାପଡ଼ିଛି । କେଉଁଦିନ କେତେ ତାରିଖ ହେବ ଏବଂ କେଉଁ ବାରରେ ପଡ଼ିବ ନିର୍ଭୁଲ ଭାବରେ କହିଦେଇପାରୁଛି ।

### ଭୋପାଳ ଗ୍ୟାସ୍ ଦୁର୍ଘଟଣା

ଗ୍ୟାସ୍ ଦୁର୍ଘଟଣାରେ ୮୫ ହଜାର ଲୋକ ଦୁର୍ଦ୍ଦଶାଗ୍ରସ୍ତ ହୋଇଛନ୍ତି । ସେମାନଙ୍କ ମଧ୍ୟରୁ ୨୫୦୦ ଫୁସ୍‌ଫୁସ୍ ରୋଗ, ୬୪୧୧ ଚକ୍ଷୁରୋଗ ଏବଂ ୩୩୭୨ ପେଟରୋଗରେ ଆକ୍ରାନ୍ତ ହୋଇଛନ୍ତି ।

### ୧୯୦୬୭ ଜଣଙ୍କୁ ଆଇନ ସାହାଯ୍ୟ

ଓଡ଼ିଶା ରାଜ୍ୟ ଆଇନ ସହାୟକ ଓ ପରାମର୍ଶଦାତା ବୋର୍ଡ଼ ଗଠନ ହେବାଠାରୁ ଏପର୍ଯ୍ୟନ୍ତ ୨୯ ହଜାର ୬୪୧ ଜଣଙ୍କ ଅବେଦନପତ୍ର ଉପରେ ୧୯୦୬୭ଟି ଦରଖାସ୍ତ ବିଚାରପାଇଁ ଗୃହୀତ ହୋଇଛି । ୧୯୮୪-୮୫ ମସିହାରେ ୧୯ ହଜାର ୪୦୮ଟି ଦରଖାସ୍ତ ଗ୍ରହଣ କରାଯାଇ ୧୪ ହଜାର ୮୮୮ଟି ବିଚାରପାଇଁ ଗୃହୀତ ହୋଇଛି ।

### ପୁରୀ ଶ୍ରୀମନ୍ଦିର ହୁଣ୍ଡିରୁ ୪୮ ଲକ୍ଷ ୭୧ ହଜାର ଟଙ୍କା ସଂଗ୍ରହ

୧୯୮୩ ଅଗଷ୍ଟ ୨ ତାରିଖରେ ପ୍ରତିଷ୍ଠା କରାଯାଇଥିବା ହୁଣ୍ଡିରୁ ଗତ ଜୁନ ଶେଷସୁଦ୍ଧା ୪୮ ଲକ୍ଷ ୭୧ ହଜାର ୨୪୭ ଟଙ୍କା ସଂଗ୍ରହ କରାଯାଇଛି । ଏହା ବ୍ୟତୀତ ସୁନାରୂପା ଅଳଙ୍କାର ମଧ୍ୟ ସଂଗୃହୀତ ହୋଇଛି ।

### ଗୋଟିଏ ବର୍ଷରେ ୩୩୩ ହଜାର ଡଲାର ପୁରସ୍କାର

ପେଶାଦାର ଖେଳାଳୀ ବୋରିସ୍ ବେକର ପ୍ରଥମ ବର୍ଷରେ ୩୩୩ ହଜାର ଡଲାର (ପ୍ରାୟ ୪୦ ଲକ୍ଷ ୯୬ ହଜାର ଟଙ୍କା) ପୁରସ୍କାର ଲାଭ କରିଛନ୍ତି ।

### ଅପରାଧୀ ଧରିବାପାଇଁ କମ୍ପ୍ୟୁଟର

ତାମିଲନାଡୁରେ ପ୍ରାୟ ୬ ଲକ୍ଷ ଅପରାଧୀଙ୍କ ଟିପଚିହ୍ନ ଏକ ସ୍ୱତନ୍ତ୍ର ଧରଣର କମ୍ପ୍ୟୁଟର ଯୋଗେ ରେକର୍ଡ଼ କରାହେଉଅଛି । ଏପର୍ଯ୍ୟନ୍ତ ୨୨୨୯୦୦ ଜଣଙ୍କର ଟିପଚିହ୍ନ ରେକର୍ଡ଼ଭୁକ୍ତ କରାଯାଇଅଛି । ଏହି କମ୍ପ୍ୟୁଟରର ମୂଲ୍ୟ ୧୩ ଲକ୍ଷ ଟଙ୍କା ।

**ଭାରତରେ ପ୍ରଥମ**

| | | |
|---|---|---|
| ବିଶ୍ୱବିଦ୍ୟାଳୟ | — | କଲିକତା |
| ରେଳପଥ | — | ବମ୍ବେଠାରୁ ପୁନା ପର୍ଯ୍ୟନ୍ତ |
| ଟେଲିଗ୍ରାଫ୍ ଲାଇନ | — | କଲିକତାରୁ ଡାଇମଣ୍ଡ ହାରବର |
| ସମ୍ବାଦପତ୍ର | — | ହିକିସ୍ ଗେଜେଟ୍ |
| ବେତାର କେନ୍ଦ୍ର | — | ମାନ୍ଦ୍ରାଜ |
| ଉପଗ୍ରହ | — | ଆର୍ଯ୍ୟଭଟ୍ଟ |

**ପାରାଦୀପ ବନ୍ଦରର ଗଭୀରତା ହ୍ରାସ**

ପାରାଦୀପ ବନ୍ଦରର ଗଭୀରତା ସାଧାରଣତଃ ୪୨ ଫୁଟ ରହିବାର କଥା । ଜୁନ ୨୨ରେ ଡ୍ରେଜର ଓଲଟିପଡ଼ିବା ଫଳରେ ଗଭୀରତା ୩୦ ଫୁଟକୁ କମିଆସିଛି ।

**ପାଉଣ୍ଡ ତୁଳନାରେ ଟଙ୍କା ମୂଲ୍ୟ ହ୍ରାସ**

ବ୍ରିଟିଶ ପାଉଣ୍ଡ ତୁଳନାରେ ଟଙ୍କାର ମୂଲ୍ୟ ଅତୁରି ହ୍ରାସ ପାଇଛି । ଗୋଟିଏ ପାଉଣ୍ଡର ମୂଲ୍ୟ ୧୬ ଟଙ୍କା ୪୪ ପଇସା ହୋଇଛି । ଚଳିତ ବର୍ଷ ଜାନୁୟାରୀ ୧ ରେ ପାଉଣ୍ଡର ମୂଲ୍ୟ ୧୪ ଟଙ୍କା ୩୦ ପଇସା ଥିଲା ।

**ମାଇସିନାଇ ନଗର**

ହୋମର ବର୍ଣ୍ଣିତ ମାଇସିନାଇ ହେଉଛି ସୁସ୍ଥାପିତ ଦୁର୍ଗ । ଏହା ରାଜଧାନୀ ଏବଂ ବାସ୍ତବରେ ସେ ସମୟରେ ରାଜଧାନୀ ରୂପକୁ ରହିଥିଲା । ପେଲୋପୋନିଜ ଉପକୂଳରେ ଏହି ଦୁର୍ଗ ସ୍ଥାପିତ ହୋଇଥିଲା । ନୂଆପ୍ଲିଆ ବନ୍ଦରଠାରୁ ଏହା ଛଅ କିଲୋମିଟର ଦୂର । ପରବର୍ତ୍ତୀ କାଳରେ ରାଜବଂଶର ଉତ୍ତରାଧିକାରୀମାନେ ଦୁର୍ଗର ଆୟତନ ବୃଦ୍ଧି କରାଇଥିଲେ । ଏହା ବାଣିଜ୍ୟ ସ୍ଥଳୀରେ ମଧ୍ୟ ପରିଣତ ହୋଇଥିଲା । ବିରାଟ କାନ୍ଥ ଦିଆଯାଇଥିଲା ଏବଂ ସିଂହଦ୍ୱାର ହୋଇଥିଲା । ମାଇସିନାଇ ରାଜପ୍ରାସାଦରେ ଖ୍ରୀଷ୍ଟପୂର୍ବ ପଞ୍ଚଦଶ ଚତୁର୍ଦ୍ଦଶ ଶତାବ୍ଦୀର ଜୀବନ ପ୍ରାଚୀନ କାଳପରି ଘରଳ ସଙ୍ଗରୁ ଆଧୁନିକ ବିଳାସ ବ୍ୟସନ ମଧ୍ୟ ରହିଆସିଥିଲା । ସାଜସଜ୍ଜା ଅତି ଆଧୁନିକ ଧରଣର ହୋଇଥିଲା । ସ୍କଲିମ୍ୟାନ ମାଇସିନାଇରେ କବର ଖନନ କରାଇ ମୁଖା, ପାତ୍ର, ମୁଦ୍ରିକା, ମଦ୍ୟପାତ୍ର, ନେକଲେସ୍ ପ୍ରଭୃତି ପାଇଥିଲେ । ଏ ସମସ୍ତ ମାଇସିନାଇରେ ଶିଳ୍ପୀମାନଙ୍କଦ୍ୱାରା ନିର୍ମିତ ହୋଇଥିଲା । ବୃହତ୍ତମ କବରକୁ 'Treasury of Artreus' ବୋଲି କୁହାଯାଏ । ଏହାର ବ୍ୟାସ ପନ୍ଦର ମିଟର ଏବଂ ଓଜନ ତ୍ରିଶ ଟନ । ଏହା ଖ୍ରୀଷ୍ଟପୂର୍ବ ୧୫୦୦ରୁ ୧୨୦୦ ମଧ୍ୟରେ ପ୍ରତିଷ୍ଠିତ ।

**ତୁଟାନ ଖାମୁନ୍‌ଙ୍କ ଶାସନ**

ମିଶରର ସମ୍ରାଟ ଫାରୋ ଅମେନହୋଟେପ-୪ ମହାନ୍ ଆଧ୍ୟାତ୍ମିକ ସଂସ୍କାରକ ଥିଲେ । ରାଷ୍ଟ୍ରରେ ସେ ପ୍ରଚାନ ଦେବତାମାନଙ୍କର ପୂଜା ନିଷିଦ୍ଧ କରାଇଥିଲେ । ଥେବସରୁ ଟେଲ୍-ଇଲ ଅମର୍ଣ୍ଣାକୁ ରାଜଧାନୀ ଉଠାଇ ନେଇଥିଲେ । ସେ ଖ୍ରୀଷ୍ଟପୂର୍ବ ୧୩୬୨ରେ ପରଲୋକ ଗମନ କରିବା ପରେ ଏହାକୁ ପୁରୋହିତମାନେ ବିପର୍ଯ୍ୟସ୍ତ କରାଇଥିଲେ ଏବଂ ସାମାଜିକ ବିପ୍ଳବ ପରେ ପରେ ଦେଖାଦେଇଥିଲା । ତାଙ୍କର ଜାମାତା ତୁଟାନ୍ ଖାମୁନ ଥେବ୍ସକୁ ରାଜଧାନୀ ଉଠାଇ ଆଣିଥିଲେ । ପୂର୍ବ ଧର୍ମର ସେ ପୁନରୁଦ୍ଧାର କରାଇଥିଲେ । ସେ ଅଠର ବର୍ଷ ବୟସରେ ପ୍ରୟୋଗ କରିଥିଲେ । କୃତଜ୍ଞ ପୁରୋହିତମାନେ ତାଙ୍କର କବରକୁ ସମୃଦ୍ଧ କଲେ । ଏହି କବର ତିନି ହଜାର ବର୍ଷକାଳ ଲୁକ୍କାୟିତ ରହିଥିଲା ।

**ହିବ୍ରୁମାନଙ୍କର ପ୍ରସ୍ଥାନ**

ଖ୍ରୀଷ୍ଟପୂର୍ବ ୧୭୫୦ରେ ଅଧିକ ସଂଖ୍ୟକ ହିବ୍ରୁ ମିଶରରେ ରହିଲେ । ଯେତେବେଳେ ହିକ୍‌ସୋସମାନେ ବହିଷ୍କୃତ ହେଲେ ଏବଂ ମିଶରର ଫାରୋମାନେ ଶାସନ ଦାୟିତ୍ୱ ହାତକୁ ନେଲେ, ସେମାନେ ଶ୍ରମିକ ହିଁ ହୋଇଥିଲେ । ସେମାନେ ମିଶରର ମୁନିବମାନଙ୍କପାଇଁ କଠିନ ପରିଶ୍ରମ କଲେ । ସେମାନେ ସେମାନଙ୍କର ନେତା ଖୋଜୁଥିଲେ । ଯଥା ସମୟରେ ଯୁବକ ମୋସେସ୍ ଏହି ସ୍ଥାନ ପୂରଣ କରି ହିବ୍ରୁମାନଙ୍କୁ ଏକାଠି କରାଇଲେ । ଫଳରେ ଚାଳିଶ ବର୍ଷ ପରେ ଦେଶାନ୍ତର ଗମନ ହୋଇଥିଲା ଏବଂ ସେମାନେ ଜୋର୍ଡାନ ନଦୀ କୂଳରେ ହିଁ ପହଞ୍ଚିଲେ । ପରିଶେଷରେ ସେମାନେ କ୍ୟାନାନ ଭୂଖଣ୍ଡରେ ପ୍ରବେଶ କରିଥିଲେ । ସେମାନେ ସେଠାରେ ଶାନ୍ତିରେ ବସବାସ କରିବାରେ ଲାଗିଲେ । ଏହା ଖ୍ରୀଷ୍ଟପୂର୍ବ ୧୨୩୦ର ଘଟଣା।

**ଫୋନେସୀୟ ସାମୁଦ୍ରିକ ଶକ୍ତିର ଉତ୍‌ଥାନ**

ମେଡ଼ିଟେରିଏନର ସମୁଦ୍ର ଉପକୂଳର ସହରରେ ଫୋନେସୀୟମାନେ ଶତାବ୍ଦୀ ଶତାବ୍ଦୀ ଧରି ବସବାସ କରି ଆସିଥିଲେ । ସେ ସମୟରେ ମିଶରୀୟମାନେ ସେମାନେ ଶାସନ କରୁଥିଲେ । ଖ୍ରୀଷ୍ଟପୂର୍ବ ୧୨୦୦ରେ ଫୋନେସୀୟମାନେ ଦାସତ୍ୱ ବନ୍ଧନରୁ ମୁକ୍ତ ହୋଇ ସ୍ୱାଧୀନ ହେଲେ । ଟ୍ୟାରି ଏବଂ ସିଡ଼ୋନ୍ ପ୍ରାଚୀନ କାଳର ସାମୁଦ୍ରିକ ଶକ୍ତିମାନଙ୍କର ମୁଖ୍ୟ ନଗର ରହିଥିଲା । ସେମାନେ ଜାହାଜ ଚଳାଇବାରେ ଲାଗିଥିଲେ । ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ ସେମାନେ ଜାହାଜ ଚଳାଉଥିବା ଯୋଗୁଁ 'ସୂର୍ଯ୍ୟାସ୍ତ'ରୁ ଫୋନେସୀୟ ବୋଲି ପରିଚିତ ହୋଇପାରିଲେ । ସେମାନେ ବାଣିଜ୍ୟ କରୁଥିଲେ । ଲିପିର ଆବିଷ୍କାର ମଧ୍ୟ କରଇଥିଲେ । ସେମାନେ ଗ୍ରୀସ୍, ରୋମ ଏବଂ ଇଉରୋପର ଅନ୍ୟାନ୍ୟ ସ୍ଥାନକୁ ଯାତ୍ରା କରୁଥିଲେ ।

**ଟ୍ରୟ ନଗର ଧ୍ୱଂସ**

ଏଜିଅନ ସମୁଦ୍ରର ଉତ୍ତରପୂର୍ବ କୋଣରେ ଶକ୍ତିଶାଳୀ ଟ୍ରୟ ନଗର ରହିଥିଲା । ଟ୍ରୟର ବ୍ୟବସାୟୀମାନେ ଇଉରୋପ ଓ ଏସିଆରେ ବାଣିଜ୍ୟ କାରବାର ଚଳାଉଥିଲେ । ଟ୍ରୟ ସମ୍ପଦରେ ପରିପୂର୍ଣ୍ଣ ହେଉଥିଲା । ଛଅ ମିଟର ଉଚ୍ଚ ଓ ପାଞ୍ଚ ମିଟର ମୋଟାର ପ୍ରାଚୀର ଗ୍ରୀକ୍‌ର ଯୋଦ୍ଧାମାନଙ୍କ କବଳରୁ ଟ୍ରୟକୁ ରକ୍ଷାକରୁଥିଲା । ସ୍କଲିମ୍ୟାନ ଖନନ କରିବା ପରେ ନଅଟି ସହରର ସନ୍ଧାନ ପାଇଥିଲେ । ଭୂମିକମ୍ପ ଫଳରେ ଏଗୁଡ଼ିକ ଭୀଷଣ କ୍ଷତିର ସମ୍ମୁଖୀନ ହୋଇଥିଲା । ଗ୍ରୀକ୍‌ମାନଙ୍କଦ୍ୱାରା ଧ୍ୱସ୍ତବିଧ୍ୱସ୍ତ ହୋଇଥିଲା । ଏହାପରେ କ୍ଷୁଦ୍ର ଆକାରରେ ପୁଣି ଗଠନ କରାଯାଇଥିଲା । ଖ୍ରୀଷ୍ଟପୂର୍ବ ପଞ୍ଚମ ଶତାବ୍ଦୀରେ ଏହା ତିରୋହିତ ହୋଇଥିଲା । ଏହା ପ୍ରାୟ ଖ୍ରୀଷ୍ଟପୂର୍ବ ୧୧୯୩ରେ ଘଟିଥିଲା ।

**ଚୌଉ ରାଜବଂଶ**

ପଞ୍ଚଷ୍ଟର ଚୌଉମାନଙ୍କ ଅଭିଯାନ ଫଳରେ ପାଞ୍ଚଶହ ବର୍ଷ ତଳର ଶ୍ୟାଙ୍ଗ ରାଜବଂଶ କ୍ଷମତାରୁ ବିଦାୟ ନେଲେ । ଅନ୍ତର୍ବିବାହ ଯୋଗୁଁ ସେମାନେ ପରବର୍ତ୍ତୀ ପାଞ୍ଚଶହ ବର୍ଷଧରି ଅନ୍ୟ ଏକ ରାଜବଂଶ ଭାବେ ଶାସନ କାର୍ଯ୍ୟ ପରିଚାଳନା କରାଇଲେ, ସେହି ସମୟରେ ବିଜ୍ଞାନର ଅଗ୍ରଗତି ସମ୍ଭବପର ହୋଇଥିଲା । ଗ୍ରହ-ବିଜ୍ଞାନର ମାନ ମନ୍ଦିର ଚୌଉ ରାଜବଂଶର ଜ୍ୟୋତିଷଙ୍କଦ୍ୱାରା ସ୍ଥାପିତ ହେଲା । ବିଚକ୍ଷଣ ବ୍ୟକ୍ତିମାନେ ପଞ୍ଜିକା ପ୍ରସ୍ତୁତ କରାଇଲେ ଏବଂ ନୂତନ ବର୍ଷାରମ୍ଭର ସିଦ୍ଧାନ୍ତ ମଧ୍ୟ ନେଲେ । ଚନ୍ଦ୍ରଗ୍ରହଣ ଓ ସୂର୍ଯ୍ୟୋପରାଗ ସମ୍ପର୍କରେ ରେକର୍ଡ ମଧ୍ୟ ରଖିବାରେ

ଲାଗିଲେ । ଏହି ସମୟରେ ଔଷଧପତ୍ରର ଉଦ୍ଭାବନ ବି ହୋଇଥିଲା । ଏକୁପଙ୍କଚରର ବ୍ୟବସ୍ଥା କରାହେଲା । ଚୀନାମାନେ ଚମତ୍କାର ଶିଳ୍ପୀ ଥିଲେ ଏବଂ ମାନଚିତ୍ର ଅତି ସେମାନଙ୍କଦ୍ୱାରା ପ୍ରସ୍ତୁତ ହେଉଥିଲା । ନାବିକମାନେ ଏହି ମାନଚିତ୍ର ରଖୁଥିଲେ । ଚୌଉ ରାଜବଂଶ ଶାସନ କରୁଥିବା ସମୟରେ ଉଚ୍ଚକୋଟୀର ସାହିତ୍ୟ ସୃଷ୍ଟି ହୋଇଥିଲା । ଏହା ଖ୍ରୀଷ୍ଟପୂର୍ବ ୧୧୨୨ରୁ ୨୪୯ ମଧ୍ୟର ଘଟଣା ।

## ଏସିରୀୟ ସାମ୍ରାଜ୍ୟ

ଉତ୍ତର ରାଜାମାନେ ଦୁଇଟି ନଦୀ ମଧ୍ୟବର୍ତ୍ତୀ ଭୂଖଣ୍ଡକୁ ଯେତେବେଳେ ଶାସନ କରୁଥିଲେ, ସେହି ନଗରଗୁଡ଼ିକ ମଧ୍ୟରୁ ଅସୁର ହେଉଛି ଗୋଟିଏ । ସେମିଟିକ୍‌ମାନେ ସେଠାକାର ବାସିନ୍ଦା ଥିଲେ । ସେମାନଙ୍କୁ ଏସିରୀୟ କୁହାଯାଉଥିଲା । ସେମାନଙ୍କର ଆକାଡ଼ିଆନ ଭାଷା ହେଉଛି ସ୍ଥାନୀୟ ଭାଷା । ଏହା ଦକ୍ଷିଣର ବେବିଲୋନର ଭାଷାଠାରୁ ସ୍ୱତନ୍ତ୍ର । ସେମାନେ ମୁଖ୍ୟତଃ ବ୍ୟବସାୟୀ ଥିଲେ । ମେସୋପଟାମିଆ ମଧ୍ୟଦେଇ ଜାନେଶକୁ ଓଟ ଓ ଗଧ ଛୁଟାଇ ଦେଉଥିଲେ । ସେମାନେ ମରୁଭୂମିର ଉପଜାତିମାନଙ୍କ କବଳରୁ ରକ୍ଷାପାଇବାପାଇଁ ସୈନ୍ୟମାନଙ୍କୁ ସଙ୍ଗରେ ନେଉଥିଲେ । ସବୁବେଳେ ଏସିରୀୟମାନେ ବିଜୟ ହାସଲ କରିପାରିଥିଲେ । ସେମାନଙ୍କ ରାଷ୍ଟ୍ର କୌଣସି ସମୟରେ ହାମୁରାବୀଙ୍କଦ୍ୱାରା ଶାସିତ ହେଉଥିଲା । ଏହାପରେ ହିଟିଟେଙ୍କଦ୍ୱାରା ଶାସନ କାର୍ଯ୍ୟ ପରିଚାଳିତ ହେଉଥିଲା । ଖ୍ରୀଷ୍ଟପୂର୍ବ ୧୨୦୦ରେ ଏହି ସାମ୍ରାଜ୍ୟର ପତନ ହେଲା । ଏସିରୀୟମାନେ ସ୍ୱାଧୀନ ହୋଇଉଠିଲେ । ଟିଗଲଥ୍-ପିଲସେର୍-୧ ସେମାନଙ୍କର ରାଜା ହେଲେ ଏବଂ ଖ୍ରୀଷ୍ଟପୂର୍ବ ୧୧୦୦ରେ ବେବିଲୋନ୍ ଦଖଲ କରିନେଲେ ।

## ସମୁଦ୍ର ଜଳରୁ ଜାଳେଣି ଶକ୍ତି

ସୋଭିଏତ୍ ଦେଶରେ ସମୁଦ୍ର ଜଳରୁ ଅଙ୍ଗାର-୪ ଶକ୍ତି ପ୍ରସ୍ତୁତ କରାଯାଉଛି । ଏହା ସୁଲଭ ମୂଲ୍ୟରେ ଜାଳେଣିରେ ବ୍ୟବହୃତ ହେଉଛି ।

## ୧୮୭୪ ମିଟରର ଦୀର୍ଘ ଚିଠି

ବରୋଦାର ୨୪ ବର୍ଷ ବୟସ୍କ ପରେଶ ପାରେଖ ୧୮୭୪ ମିଟରର ସର୍ବବୃହତ୍ ଚିଠି ୧୯୮୦ରେ ଲେଖିଥିଲେ ଏବଂ ଏହା ଲେଖିବାପାଇଁ ତାଙ୍କୁ ଛଅମାସ ଲାଗିଥିଲା । ଚିଠିର ଓଜନ ଥିଲା ୧୦ କିଲୋଗ୍ରାମ ଏବଂ ସେଥିରେ ନିଜ ଜୀବନର ଘଟଣାବଳୀ ସେ ଲେଖିଥିଲେ । ପୂର୍ବରୁ ୧୯୭୩ରେ ପଶ୍ଚିମ ଜର୍ମାନର ଥମସ୍ ନିଅହୋସ୍ ୧୨୨୩ ମିଟରର ଏକ ଚିଠି ଲେଖିଥିଲେ ।

## ବିଶ୍ୱର ଓଜନିଆ ଘଣ୍ଟା

ରୁଷର ମସ୍କୋରେ ବିଶ୍ୱର ସବୁଠାରୁ ଓଜନିଆ ଘଣ୍ଟା ରହିଛି । ଏହାର ଓଜନ ୧୯୭ ଟନ୍ ଏବଂ ବ୍ୟାସ ୨୨ ଫୁଟ ୮ ଇଞ୍ଚ । ଘଣ୍ଟାର ଉଚ୍ଚତା ୧୯ ଫୁଟ ଏବଂ ଏହାର ମୋଟେଇ ୨୪ ଇଞ୍ଚ । ୧୮୩୨ ମସିହାଠାରୁ ଏହି ଘଣ୍ଟା କ୍ରେମେଲିନ୍‌ଠାରେ ରହିଆସିଥିଲା ।

## ୫୦ ଘଣ୍ଟା ଧରି ସଙ୍ଗୀତ ଆସର

ଆମେରିକା ଯୁକ୍ତରାଷ୍ଟ୍ରର ଓହିଓରେ ମାଉଣ୍ଟ ଇଉନିୟନ କଲେଜର ପାଞ୍ଚଜଣ ଛାତ୍ର ୫୦ ଘଣ୍ଟା ଧରି ଗୀତ ଗାଇଥିଲେ । ଦକ୍ଷିଣ ଆମେରିକାରୁ କଲେଜ ସାହାଯ୍ୟ ସକାଶେ ଏହି ଆସର ହୋଇଥିଲା । ୫୦ ଘଣ୍ଟା କାଳ ବିନା ବିରତିରେ ଆସର ଚାଲିଥିଲା ।

**ପୃଥିବୀର ବିଳାସତମ କାର୍**

ଇରାନର ଶାହାଙ୍କର ଏ-୧୯୮୯ କାଡ଼ିଲାକ କାର ନିଉୟର୍କରେ ବିକ୍ରି ହୋଇଯାଇଛି । ଏହା ବୁଲେଟ୍ ପ୍ରୁଫ୍ କାର୍ । ଏହାର ମୂଲ୍ୟ ଥିଲା ୨୦ ଲକ୍ଷ ଟଙ୍କା ।

**କୃତ୍ରିମ ଚର୍ମ ଯୋଗେ ଯନ୍ତ୍ରଣାରୁ ଅବ୍ୟାହତି**

ବୋଷ୍ଟନର ଡକ୍ଟର ଜନ ବ୍ରୁକ ଏବଂ ପ୍ରଫେସର ଇନିସ୍ ୟାନାସ କୋଲାଜିନରୁ ଚର୍ମ ପ୍ରସ୍ତୁତ କରିଛନ୍ତି । ନିଆଁରେ ମଣିଷ ପୋଡ଼ିଗଲେ ଏହି କୃତ୍ରିମ ଚର୍ମ ଯନ୍ତ୍ରଣାରୁ ମୁକ୍ତ କରାଇଥାଏ ।

**ସୌରଶକ୍ତିର ଉଡ଼ାଜାହାଜ**

ଇଂରେଜ ଶିଳ୍ପୀ ଫ୍ରେଡ୍ ଟୁ ସୌରଶକ୍ତିର ଉଡ଼ାଜାହାଜ ଉଦ୍ଭାବନ କରିଛନ୍ତି । ଉଡ଼ାଜାହାଜ ସୌରଶକ୍ତି ସାହାଯ୍ୟ ନେଇ ଗତି କରିପାରିବ । ଫ୍ରେଡ୍ ଟୁ ଏହି ଉଡ଼ାଜାହାଜରେ ଆକାଶ ମାର୍ଗରେ ଭ୍ରମଣ କରିଛନ୍ତି ।

**ହଜାରେ ପ୍ରକାର ବାଦୁଡ଼ି**

ବିଶ୍ୱରେ ପ୍ରାୟ ୧୦୦୦ ପ୍ରକାର ବାଦୁଡ଼ି ରହିଛନ୍ତି । ଉତ୍ତର ମେରୁ ଓ ଦକ୍ଷିଣ ମେରୁକୁ ଛାଡ଼ିଦେଲେ ଅନ୍ୟ ସବୁ ଅଞ୍ଚଳରେ ପ୍ରାୟ ବାଦୁଡ଼ି ରହିଛନ୍ତି ।

**କିରୋସିନ୍ ଲଣ୍ଠନରୁ ବିଦ୍ୟୁତ୍ ଶକ୍ତି**

ଲଦାଖରେ ସୈନ୍ୟମାନଙ୍କ ସକାଶେ କିରୋସିନ୍ ଲଣ୍ଠନରୁ ଟ୍ରାଞ୍ଜିଷ୍ଟର ରେଡ଼ିଓ ଦ୍ୱାରା ବିଦ୍ୟୁତ୍ ଶକ୍ତି ସଞ୍ଚୟ କରାଯାଉଛି ।

**ପ୍ରାଚୀନତମ ଲିଖିତ ରେକର୍ଡ**

ଇରାକରେ ଊର୍କା ନିକଟରେ ୫୦ ବର୍ଷ ପୂର୍ବରୁ ୩୨୦୦ ଖ୍ରୀଷ୍ଟ ପୂର୍ବର ୪୦୦ଟି ମାଟି ଖୋଦିତ ଫଳକର ସନ୍ଧାନ ମିଳିଛି । ଏହା ବିଶ୍ୱରେ ମାନବ ସମାଜର ପ୍ରାଚୀନତମ ଲିଖିତ ରେକର୍ଡ ।

**ବିଶ୍ୱର ଖର୍ଚ୍ଚବହୁଳ ନଗର**

ଜାପାନର ଟୋକିଓ ହେଉଛି ବିଶ୍ୱର ସବୁଠାରୁ ଖର୍ଚ୍ଚବହୁଳ ନଗର । ଚୀନର ପେକିଂ ବିଶ୍ୱରେ ସବୁଠାରୁ କମ୍ ଖର୍ଚ୍ଚ ସାପେକ୍ଷ ନଗର । ଟୋକିଓରେ ହୋଟେଲ ଭଡ଼ା, ଖାଦ୍ୟ, ଟ୍ୟାକ୍‌ସି ପ୍ରଭୃତିର ଦେୟ ଯଥେଷ୍ଟ ବେଶି । ଦଶଟି ଖର୍ଚ୍ଚ ବହୁଳ ନଗର ଗୁଡ଼ିକ ହେଉଛି—ଟୋକିଓ, ପ୍ୟାରିସ୍, ଦୁବଇ, ବ୍ରୁସେଲ୍‌ସ, ଆବୁଧାବୀ, ଫ୍ରାଙ୍କଫୁର୍ଟ, ମାନାମା (ବାହାରିନ୍) କୋପେନ ହାଗେନ୍, ଜେନେଭା ଏବଂ ଜେଡାହ ।

**୩୦୦୦ ବର୍ଷ ତଳର ଖଣି**

ତୁର୍କିରେ ବେଟ୍-ପାକ-ଡାଲା ମରୁଭୂମିରେ ୩୦୦୦ ବର୍ଷ ତଳର ଏକ ଖଣିର ସନ୍ଧାନ ମିଳିଛି ।

**ମାଛି ଯୋଗେ ୩୦ ପ୍ରକାର ରୋଗ**

ମାଛି ବଡ଼ ବିପଦଜନକ । ଏହାଦ୍ୱାରା ମଣିଷକୁ ୩୦ ପ୍ରକାର ରୋଗ ହୋଇଥାଏ ।

**୭ଟି ଅକ୍ଷରର ଗ୍ରିଟିଙ୍ଗ୍**

'Thaaaal' ହେଉଛି ସାତୋଟି ଅକ୍ଷରର ଗ୍ରିଟିଙ୍ଗସ୍ । ଏହାର ଅର୍ଥ ହେଉଛି ଯେ Long life and health କେନିୟାର କିକୁୟୁ-ଉପଜାତି ମଧ୍ୟରେ ଏହା ବ୍ୟବହୃତ ହେଉଅଛି ।

### ସବୁଠାରୁ ଡେଙ୍ଗା ବ୍ୟକ୍ତି

ହଲଣ୍ଡର ଜାନ୍‌ଭନ୍ ଆଲବର୍ଟ ହେଉଛନ୍ତି ବିଶ୍ୱର ସବୁଠାରୁ ଡେଙ୍ଗା ବ୍ୟକ୍ତି । ତାଙ୍କର ଉଚ୍ଚତା ୯ ଫୁଟ୍ ୩½ ଇଞ୍ଚ୍ ।

### ହୃତ୍‌ପିଣ୍ଡରୁ ୬୦୦୦୦ ମାଇଲ୍ ରକ୍ତ ପ୍ରବାହିତ ହୁଏ

ମଣିଷର ହୃତପିଣ୍ଡରୁ ଦିନକୁ ହଜାରେଥର ରକ୍ତ ଧମନୀରେ ପ୍ରବାହିତ ହେଉଛି । ୬୦,୦୦୦ ମାଇଲ ବ୍ୟାପି ଧମନୀ ଏବଂ ସେଗୁଡ଼ିକ ଶାଖାଗୁଡ଼ିକୁ ଏହି ରକ୍ତ ଯାଇଥାଏ ।

### ବିଶ୍ୱର ବୃହତ୍ତମ ବଡ଼ଦିନ କାର୍ଡ

ତେହେରାନରେ ଆମେରିକା ଯୁକ୍ତରାଷ୍ଟ୍ରର ମୁଣ୍ଡ ଜାମିନ୍ ଥିବା ବ୍ୟକ୍ତି ୧୯୭୯ ଡିସେମ୍ବରରେ ବିଶ୍ୱର ବୃହତ୍ତମ ବଡ଼ଦିନ କାର୍ଡ ପାଇଥିଲେ । ଏହାର ୬୪ ଫୁଟ୍ ଲମ୍ବ ଏବଂ ୧୦½ ଫୁଟ୍ ଓସାର ରହିଥିଲା । ଆମେରିକାର ୨୨୦୦୦ ବ୍ୟକ୍ତି ଏଥିରେ ସ୍ୱାକ୍ଷର କରିଥିଲେ ।

### କେଲଟ୍‌ମାନଙ୍କ ସ୍ଥାନାନ୍ତର

ଇଉରୋପର ଉତ୍ତରାଂଶରେ କେଲ୍‌ଟମାନେ ବସବାସ କରୁଥିଲେ । ସେମାନେ ଯୁଦ୍ଧପ୍ରିୟ ଜାତିଥିବାରୁ ପଶ୍ଚିମ ଓ କେନ୍ଦ୍ର ଇଉରୋପରେ ନୂତନ ପ୍ରସ୍ତର ଯୁଗ ତଥା ବ୍ରୋଞ୍ଜ ଯୁଗରେ ସେମାନେ ବସତି ସ୍ଥାପନ କରିଗଲେ । ସେମାନଙ୍କର ସଭ୍ୟତା କ୍ରମଶଃ ଉନ୍ନତତର ହେଲା । ଉତ୍ତର ପୂର୍ବ ଫ୍ରାନ୍‌ସ, ଦକ୍ଷିଣ ପଶ୍ଚିମ ଜର୍ମାନୀ ଏବଂ ବୋହେମିଆରେ ସେମାନଙ୍କର ସଭ୍ୟତାର ଅଗ୍ରଗତି ହି ହେବାରେ ଲାଗିଥିଲା । ଉତ୍ତର ଜର୍ମାନୀ ଦଳର ଆକ୍ରମଣରେ ସେମାନେ ଗ୍ରୀସ୍‌ର ଦକ୍ଷିଣ ଏବଂ ଇଟାଲୀକୁ ସ୍ଥାନାନ୍ତରିତ ହୋଇଥିଲେ । ପଶ୍ଚିମ ଫ୍ରାନ୍‌ସ ଏବଂ ସ୍ପେନ ଆଡ଼କୁ ସେମାନେ ମଧ୍ୟ ଅଗ୍ରସର ହେବାରେ ଲାଗିଲେ । କେଲ୍‌ଟମାନେ ବ୍ରିଟେନରେ ଲୌହଯୁଗ ଆଣିଥିଲେ । ରୋମୀୟମାନେ ୪୩ ଖ୍ରୀଷ୍ଟାବ୍ଦରେ ଆକ୍ରମଣ କରିବା ପୂର୍ବରୁ ସମାନେ ଅତ୍ୟନ୍ତ ଶକ୍ତିଶାଳୀ ରହିଥିଲେ । କେଲଟମାନେ ଯୁଦ୍ଧପ୍ରିୟ ଓ କଳହପ୍ରିୟ ହେଲେ ମଧ୍ୟ ସଫଳ କୃଷକ ଏବଂ କାରିଗର ଥିଲେ । ଖ୍ରୀଷ୍ଟପୂର୍ବ ୬୦୦ରେ ସେମାନଙ୍କର ସ୍ଥାନାନ୍ତର ହୋଇଥିଲା ।

### ଜେରୁଜେଲମରେ ନେବୁ ଚନ୍ଦନେ ଜାର୍‌ଙ୍କ ଜନ୍ମ

ଖ୍ରୀଷ୍ଟପୂର୍ବ ୬୨୨ ରେ ନେବୁ ଚନ୍ଦନେଜାର ଜନ୍ମଗ୍ରହଣ କରିଥିଲେ । ସେ ଜଣେ ବିଶିଷ୍ଟ ଯୋଦ୍ଧାଥିଲେ । ଟ୍ୟାର୍‌ର ବିଦ୍ରୋହୀମାନେ ଫୋନିସୀୟମାନଙ୍କ ବିରୁଦ୍ଧରେ ସୈନ୍ୟଚାଳନା କରିବା ପାଇଁ ତାଙ୍କୁ ନେତୃତ୍ୱ ଦେଇଥିଲେ । ଖ୍ରୀଷ୍ଟପୂର୍ବ ୫୯୭ରେ ସେ ନଗର ଦଖଲକରି ଜିଡ଼ିକିହାଙ୍କୁ ନୂତନ ରାଜା କରାଇଲେ । ଏହି ରାଜା ମଧ୍ୟ ନେବୁ ଚନ୍ଦନେଜାରଙ୍କ ବିରୁଦ୍ଧରେ ଉଠିଲେ । ଏହା ଫଳରେ ଜିଡ଼ିକିହା ଜେଲରେ ମୃତ୍ୟୁବରଣ କଲେ । ତାଙ୍କର ପୁତ୍ରମାନଙ୍କୁ ହତ୍ୟା କରାହେଲା ।

### ଗୌତମ ବୁଦ୍ଧଙ୍କ ଜନ୍ମ

ଖ୍ରୀଷ୍ଟପୂର୍ବ ୫୬୦ରେ ଗୌତମ ବୁଦ୍ଧ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତୃଦତ୍ତ ନାମଥିଲା ସିଦ୍ଧାର୍ଥ । ସଂସାର ପ୍ରତି ତାଙ୍କର ବିରାଗ ଆସିବାରୁ ରାଜପ୍ରାସାଦ, ପିତାମାତା, ପତ୍ନୀପୁତ୍ର ସମସ୍ତଙ୍କୁ ପରିତ୍ୟାଗ କରି ସତ୍ୟର ସନ୍ଧାନରେ ବାହାରିଗଲେ । ସେ ସତ୍ୟର ସନ୍ଧାନ ପାଇଲେ ଏବଂ ଧର୍ମପ୍ରଚାର କାର୍ଯ୍ୟରେ ନିଜକୁ ଉତ୍ସର୍ଗ କରାଇଲେ । ତାଙ୍କର ପ୍ରବର୍ତ୍ତିତ ଧର୍ମକୁ 'ବୌଦ୍ଧଧର୍ମ' କୁହାଯାଏ ।

## ଗ୍ରୀସ୍‌ର ପିଥାଗୋରସ

ପିଥାଗୋରସ ଗ୍ରୀସ୍‌ରେ ଜନ୍ମଗ୍ରହଣ କରିଥିଲେ । ସେ ଦକ୍ଷିଣ ଇଟାଲୀର କ୍ରୋଟୋନାରେ ଏକ ସ୍କୁଲ ପ୍ରତିଷ୍ଠା କରଇ ରହିବାରେ ଲାଗିଲେ । ଗ୍ରୀସ୍‌ରେ ସେ ଜଣେ ପ୍ରାଚୀନ କାଳର ଦାର୍ଶନିକ ଭାବେ ସମ୍ମାନିତ ହୁଅନ୍ତି । ସେ ଜଣେ ସ୍ୱନାମଧନ୍ୟ ଗାଣିତିକ । ଜନ୍ମାନ୍ତର ବାଦରେ ବିଶ୍ୱାସ ମଧ୍ୟ ତାଙ୍କର ରହିଥିଲା ।

## ଦ୍ୱିତୀୟ ବିଶ୍ୱଯୁଦ୍ଧ ସମ୍ପର୍କୀୟ କେତୋଟି ଜାଣିବା କଥା

୧—ନାଜୀମାନଙ୍କ ଦ୍ୱାରା ଆରମ୍ଭ ହୋଇଥିବା ଦ୍ୱିତୀୟ ବିଶ୍ୱଯୁଦ୍ଧରେ ୧୭୦ କୋଟି ଜନସଂଖ୍ୟା ବିଶିଷ୍ଟ ୬୧ଟି ଦେଶ ସଂଶ୍ଳିଷ୍ଟ ହୋଇଥିଲେ । ଏଇ ଜନସଂଖ୍ୟା ଥିଲା ବିଶ୍ୱ ଜନସଂଖ୍ୟାର ଚାରି ପଞ୍ଚମାଂଶ ।

୨—ଏଇ ଯୁଦ୍ଧ ୧୯୩୯—୧୯୪୫ ପ୍ରାୟ ଛଅବର୍ଷ ଧରି ଚାଲିଥିଲା । ସୋଭିଏତ୍ ସୈନ୍ୟମାନେ ୧୩ଟି ୟୁରୋପୀୟ ଓ ଏସୀୟ ଦେଶର ମୁକ୍ତିରେ ଅଂଶଗ୍ରହଣ କରିଥିଲେ । ଏଇ ସବୁ ଦେଶର ମୋଟ କ୍ଷେତ୍ରଫଳ ୨.୫ ନିୟୁତ ବର୍ଗକିଲୋମିଟର ଏବଂ ଜନସଂଖ୍ୟା ୧୮୩ ନିୟୁତ ।

୩—ଏଇ ଯୁଦ୍ଧରେ ଚାଳିଶଟି ଦେଶ ରଣାଙ୍ଗନରେ ପରିଣତ ହୋଇଥିଲା ।

୪—ମୋଟ ୧୧ କୋଟି ଲୋକ ସୈନ୍ୟବାହିନୀରେ ଥିଲେ ।

## ଦ୍ୱିତୀୟ ବିଶ୍ୱଯୁଦ୍ଧରେ ନିହତ ଲୋକଙ୍କ ସଂଖ୍ୟା

ମୋଟ—୫୪,୮୦୦,୦୦୦

| | | |
|---|---|---|
| ସୋଭିଏତ୍ ୟୁନିୟନ | — | ୨୦,୩୦୦,୦୦୦ |
| ପୋଲାଣ୍ଡ | — | ୬,୦୦୦,୦୦୦ |
| ୟୁଗୋସ୍ଲାଭିଆ | — | ୧୨,୦୦,୦୦୦ |
| ଫ୍ରାନ୍ସ | — | ୬,୦୦,୦୦୦ |
| ଗ୍ରେଟ୍ ବ୍ରିଟେନ୍ | — | ୩୮୮,୦୦୦ |
| ଆମେରିକା ଯୁକ୍ତରାଷ୍ଟ୍ର | — | ୩୨୯,୦୦୦ |
| ଜର୍ମାନୀ | — | ୭,୦୦୦,୦୦୦ |
| ନିଖୋଜ | — | ୩,୦୦୦,୦୦୦ |

ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ମୋଟ ୧୩,୦୦୦,୦୦୦ ପିଲା ଆକ୍ରମଣ ସମୟରେ ନିହତ ହୋଇଥିଲେ, ପୋଡ଼ି ମରିଥିଲେ, ନାଜୀ ବନ୍ଦୀ ଶିବିରମାନଙ୍କରେ ମୃତ୍ୟୁବରଣ କରିଥିଲେ, ଭୋକ ଉପାସରେ ବା ଅନ୍ୟକୌଣସି ଉପାୟରେ ପ୍ରାଣ ହରାଇଥିଲେ ।

ନାଜୀ ଜର୍ମାନୀର ବନ୍ଦୀ ଶିବିରମାନଙ୍କରେ ୧୨,୦୦୦,୦୦୦ ନିରୀହ ଲୋକଙ୍କୁ ମାରିଦିଆଯାଇଥିଲା ।

ପୂର୍ବ ୩୫୦ ବର୍ଷ ତୁଳନାରେ ଅଢ଼େଇଗୁଣ ଅଧିକ ଲୋକଙ୍କୁ ଯୁଦ୍ଧରେ ହରାଇଥିଲା ।

ଏଇ ଯୁଦ୍ଧରେ ଯେତେଲୋକ ମରିଥିଲେ, ସେମାନଙ୍କ ମଧ୍ୟରେ ବେସାମରିକ ଲୋକଙ୍କର ସଂଖ୍ୟା ଥିଲା ଶତକଡ଼ା ୫୦ ଭାଗ, ଅର୍ଥାତ୍ ପ୍ରଥମ ବିଶ୍ୱଯୁଦ୍ଧ ତୁଳନାରେ ୧୦ ଗୁଣ ବେଶୀ ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ମାନବ ଜାତିକୁ ମୋଟ ୪,000,000 ନିୟୁତ ଡଲାର ବ୍ୟୟ କରିବାକୁ ହୋଇଥିଲା ।

ଆମେରିକା ଯୁକ୍ତରାଷ୍ଟ୍ର ଓ ଗ୍ରେଟ୍ ବ୍ରିଟେନର ମୋଟ୍ ଯେତେଲୋକ ମରିଥିଲେ, ସୋଭିଏତ୍ ୟୁନିୟନରେ ମରିଥିଲେ ତା'ର ପ୍ରାୟ ୨0 ଗୁଣ ବେଶୀ ଲୋକ ।

**ତୁମେ ଜାଣିଛ କି ?**

ଭାରତର ଦ୍ୱାର—ବମ୍ବେ
ଭାରତର ପ୍ରାସାଦମୟୀ ନଗରୀ—କଲିକତା
ଭାରତର ଉଦ୍ୟାନ—ଲକ୍ଷ୍ନୌ
ଭାରତର ମରୁଭୂମି—ରାଜସ୍ଥାନର ଥର
ଭାରତର ବୃଷ୍ଟି ବହୁଳ ଅଞ୍ଚଳ—ଚେରାପୁଞ୍ଜି
ଭାରତର ଉଷ୍ଣତମ ଅଞ୍ଚଳ—ରାଜକୋଟ
ଭୂସ୍ୱର୍ଗ—କାଶ୍ମୀର
ଦକ୍ଷିଣାତ୍ୟର ଗଙ୍ଗା—କାବେରୀ ନଦୀ
ନୀଳନଦୀର ଦାନ—ଇଜିପ୍ଟ୍ (ମିଶର)
ଚୀନର ଦୁଃଖ—ହୋୟାଂହୋ
ତମ୍ବାର ଦେଶ—ସାଇପ୍ରସ
ଭାରତର ହଲିଉଡ୍—ବମ୍ବେ
ବଜ୍ରପାତର ଦେଶ—ଜାପାନ
ପଞ୍ଚ ନଦୀର ଦେଶ—ପଞ୍ଜାବ
ବଙ୍ଗଳାର ଦୁଃଖ—ଦାମୋଦର ନଦୀ
ପ ଗୋଡା ଦେଶ—ବ୍ରହ୍ମଦେଶ
ଅନ୍ଧକାରାଛନ୍ନ ଦେଶ—ଆଫ୍ରିକା
ଉଦିତ ସୂର୍ଯ୍ୟର ଦେଶ—ଜାପାନ
ନିଷିଦ୍ଧ ନଗର—ଲାସା (ତିବ୍ବତ)
ମନ୍ଦିର ନଗରୀ—ବାରଣାସୀ
ନିଶୀଥ ସୂର୍ଯ୍ୟର ଦେଶ—ହାମର ଫେଷ୍ଟ (ନରୱେ)
ପିରାମିଡ଼ର ଦେଶ—ମିଶର
ଧଳା ହାତୀର ଦେଶ—ଥାଇଲାଣ୍ଡ
ପ୍ରାଚ୍ୟର ଉଦ୍ୟାନ—ଜାଭା
ଖବର କାଗଜର ଦେଶ—ନିଉଫାଉଣ୍ଡଲାଣ୍ଡ
ଭୂମଧ୍ୟ ସାଗରର ଋବି—ଜିବ୍ରାଲଟର
ଗଗନ ସହର—ନ୍ୟୁୟର୍କ
ଅନନ୍ତ ସହର—ରୋମ
ୟୁରୋପର ଖେଳପଡିଆ—ସୁଇଜରଲାଣ୍ଡ
ଭାରତର ଶୁକପକ୍ଷୀ—ଅମିର ଖସ୍ରୁ
ଗ୍ରାନାଇଟ ପ୍ରସ୍ତର ଦେଶ—ଏବେରଡିନ୍
ଆରବ ମହାସାଗରର ଜିବ୍ରାଲଟର—ଏଡେନ୍
ଝୁଲନ୍ତି ମେଷ ଚର୍ମର ଦେଶ ଓ ଦ୍ୱୀପ ମହାଦେଶ—ଅଷ୍ଟ୍ରେଲିଆ
ଲୋତକ ଦ୍ୱାର—ବ ବେଲ ମାଣ୍ଡବ ପ୍ରଣାଳୀ
ମୁକ୍ତାର ଦ୍ୱୀପ—ବେହରିନ

ୟୁରୋପର କାର୍ଯ୍ୟଶାଳା—ବେଲଜିୟମ୍
କର୍କଦ୍ୱୀପ—ନିଉଫାଉଣ୍ଡଲାଣ୍ଡ
ପିଚଦ୍ୱୀପ—ତ୍ରିନିଦାଦ
କର୍ପୂର ଦ୍ୱୀପ—ଟାଇୱାନ୍
ଲବଙ୍ଗ ଦ୍ୱୀପ—ଜାଞ୍ଜିବର
ମଟରଗାଡ଼ି ସହର—ଡେଟ୍ରୋୟଟ
ନୀଳ ପର୍ବତ—ନୀଳଗିରି ପର୍ବତ (ଭାରତ)
ପୃଥିବୀର ଛାତ—ପାମିର
ପୃଥିବୀର ଚିନିହାଣ୍ଡି—କ୍ୟୁବା
ପୃଥିବୀର ନାଗର ସହର—ଭେନିସ୍
ମରକତ ମଣି ଦ୍ୱୀପ—ଆୟାରଲାଣ୍ଡ
ଗୋଲାପବର୍ଣ୍ଣର ସହର—ଜୟପୁର (ରାଜସ୍ଥାନ)
ନିର୍ଜନ ଦ୍ୱୀପ—ଟ୍ରିଷ୍ଟାଣ୍ଡି ଗୁନା

## ଏଥେନସ୍‌ରେ ଆଇନ୍

ଖ୍ରୀଷ୍ଟପୂର୍ବ ସପ୍ତମ ଶତାବ୍ଦୀରେ ଗ୍ରୀସ୍‌ରେ ଅସ୍ଥିରତା ଲାଗି ରହିଥିଲା । ସମ୍ଭ୍ରାନ୍ତମାନେ ମୁକ୍ତ ମଣିଷଙ୍କୁ କ୍ରୀତଦାସ ଭଳି ବ୍ୟବହାର ଦେଖାଉଥିଲେ । ଟ୍ୟାରେଣ୍ଟ (Tyrant) ଶାସକମାନେ ଶାସନ କରିବରେ ଏଥିପ୍ରତି ମୁକ୍ତ ମଣିଷମାନେ ହତୋତ୍ସାହ ହୋଇପଡ଼ିଲେ । ସାମାଜିକ ବିପ୍ଳବ ନ ହେବାପାଇଁ ଏଥେନସ୍‌ର ମୁକ୍ତ ମଣିଷମାନଙ୍କୁ ଶେଷରେ ସୁବିଧା ସୁଯୋଗ ଦିଆହୋଇଥିଲା । ଡ୍ରାକୋ (Draco) ଧନୀମାନଙ୍କ କବଳରୁ ଗରିବଙ୍କୁ ରକ୍ଷା କରିବାପାଇଁ ଆଇନ୍ କରାଇଥିଲେ । ଖ୍ରୀଷ୍ଟପୂର୍ବ ୬୨୧ରେ ସେ କାର୍ଯ୍ୟ ଆରମ୍ଭ କରିଥିଲେ । ଆଇନ୍ କରାଯିବା ପରେ ତାହା କାର୍ଯ୍ୟକାରୀ ହେବା ଅସମ୍ଭବ ହୋଇପଡ଼ିଲା । ପଚିଶ ବର୍ଷପରେ ସୋଲୋନ୍ (Solon) ଏଥେନସ୍‌ରେ ମୁଖ୍ୟ ମାଜିଷ୍ଟ୍ରେଟ୍ ହେଲେ ଏବଂ ସେ ଏହାକୁ କାର୍ଯ୍ୟକାରୀ କରାଇଥିଲେ । ପରିଣାମରେ ଜନସାଧାରଣ ହିଁ ସାଧାରଣତନ୍ତ୍ର ଦାବୀ କରିବାରେ ଲାଗିଲେ ।

## ଏଇସୋପ୍‌ଙ୍କ ଉପକଥା

ଗ୍ରୀକ୍ ଲେଖକ ଏଇସୋପ୍ (Aesop) ପ୍ରଥମେ କ୍ରୀତଦାସ ରହିଥିଲେ । ଅମୋସ୍‌ର ଇଡ୍‌ମୋନ (Iadmon) ତାଙ୍କର ମୁନିବ ଥିଲେ ଏବଂ ତାଙ୍କୁ ମୁକ୍ତକରି ଦେଇଥିଲେ । ଏଇସୋପ୍ ତାଙ୍କର ଉପକଥା ପାଇଁ ପ୍ରସିଦ୍ଧି ଅର୍ଜନ କରିଥିଲେ । 'ଦି ଓଲ୍ଫ ଇନ ସିପ୍'ସ କ୍ଲୋଥିଙ୍ଗ୍' (The wolf in Sheep's clothing) ଏବଂ ଦି ଫ୍ରଗସ୍ ଅସ୍କିଙ୍ଗ ଫର ଏ କିଙ୍ଗ (The Frogs Asking for a king) ପ୍ରଭୃତି ତାଙ୍କର ଆଦର୍ଶ ରଚନା ।

## ଲାଓସିଙ୍କ ଜନ୍ମ

ପ୍ରାଚ୍ୟର ତିନିଜଣ ଆଧ୍ୟାତ୍ମିକ ବକ୍ତାଙ୍କ ମଧ୍ୟରେ ଚୀନ୍ ଦାର୍ଶନିକ ଲାଓସି ହେଉଛନ୍ତି ପ୍ରଥମ । ଅନ୍ୟମାନଙ୍କ ମଧ୍ୟରେ କନଫୁସିୟସ ଏବଂ ବୁଦ୍ଧ ହିଁ ରହିଛନ୍ତି । ମାର୍ଗ ଅନୁସନ୍ଧାନରେ ଜୀବନ ଉତ୍ସର୍ଗ କରିବାକୁ ଲାଓସି (Lao-Tse) ଶିକ୍ଷା ଦେଉଥିଲେ । ଟାଓଇଷ୍ଟ (Taoist) ଧର୍ମର ସେ ମୁଖ୍ୟ ଥିଲେ ।

**ଜୋରେଷ୍ଟରଙ୍କର ଶିକ୍ଷା**

ପାରସ୍ୟରେ ପ୍ରାଚୀନ କାଳରେ ଜୋରେଷ୍ଟର୍ (Zoroaster) ଥିଲେ ମହାନ୍ ବ୍ୟବସ୍ଥାପକ ଏବଂ ଧର୍ମପ୍ରଚାରକ । ଭଲ ଆଉ ମନ୍ଦର ଯୁଦ୍ଧ ହେଉଛି ଜୀବନ । ଜୋରେଷ୍ଟରଙ୍କ ଧର୍ମରେ ଅଗ୍ନି ଉପାସନା ହିଁ ରହିଛି ।

**ସେରେବ୍ରାଲ ଷ୍ଟ୍ରୋକ୍‌ର ବାର୍ତ୍ତାବହ**

ମୁଣ୍ଡବ୍ୟଥା, ଘୁମ, ମୁଣ୍ଡବୁଲା, ବ୍ୟକ୍ତିତ୍ୱରେ ସାମୟିକ ପରିବର୍ତ୍ତନ ପ୍ରଭୃତି ସେରେବ୍ରାଲ ଷ୍ଟ୍ରୋକ୍‌ର ବାର୍ତ୍ତାବହ । ଏହାଫଳରେ ପକ୍ଷାଘାତ ରୋଗ ହୁଏ । ମସ୍ତିଷ୍କରେ ଷ୍ଟ୍ରୋକ ଲାଗିବା ଆଗରୁ ବାହୁ, ଗୋଡ ବା ମୁହଁରେ ଦୁର୍ବଳତା ଅନୁଭୂତି ହୋଇଥାଏ । ଦୃଷ୍ଟିଶକ୍ତିରେ ଅସୁବିଧା ହୁଏ ।

**ବେଢିଂରେ ଛେପ ପକାଇବା ନିଷିଦ୍ଧ**

ବେଢିଂରେ ରାସ୍ତାଘାଟରେ ଛେପଖଙ୍କାର ପକାଇବା ଅଭ୍ୟାସ ରୋକିବା ପାଇଁ ଗତ ମାସରେ ଆଇନ କରାଯାଇଛି । ଏହା ଅମାନ୍ୟ କରିବାରୁ ୧୦ ଲକ୍ଷରୁ ଊର୍ଦ୍ଧ୍ୱ ବ୍ୟକ୍ତି ଅଟକ ରହିଛନ୍ତି । ତିନିବର୍ଷ ପାଇଁ ଆଇନକୁ କଡ଼ାକଡ଼ି କରାଯାଇଛି ।

**ଏସିଆରେ ଖାଦ୍ୟାଭାବ ବୃଦ୍ଧି**

୬୯ଟି ରାଷ୍ଟ୍ରର ନିଅଣ୍ଟ ଖାଦ୍ୟପଦାର୍ଥ ୧୯୮୬ ମସିହାରେ ସାମାନ୍ୟ ହ୍ରାସ ପାଇପାରେ । ଚଳିତ ବର୍ଷ ଏହି ସମସ୍ତ ରାଷ୍ଟ୍ରରେ ୧କୋଟି ୧୭ ଲକ୍ଷ ଟନ ଖାଦ୍ୟପଦାର୍ଥ ନିଅଣ୍ଟ ପଡୁଛି । ଆଗାମୀ ବର୍ଷ ଏହା ୧ କୋଟି ୧୪ ଲକ୍ଷ ଟନ ହୋଇପାରେ ।

**ମହିଳାମାନେ ପରିଶ୍ରମୀ**

ପୁରୁଷମାନଙ୍କ ତୁଳନାରେ ମହିଳାମାନେ ଅଧିକ ପରିଶ୍ରମ କରୁଛନ୍ତି ବୋଲି ଜାତିସଂଘ ତରଫରୁ ଏକ ରିପୋର୍ଟରେ କୁହାଯାଇଛି । ବିଭିନ୍ନ ରାଷ୍ଟ୍ର ମହିଳାମାନଙ୍କୁ ପୁରୁଷମାନଙ୍କ ଭଳି ସମାନ ସାମ୍ବିଧାନିକ ତଥା ଆଇନଗତ ଅଧିକାର ଦେଇଛି । ୬୫ଟି ରାଷ୍ଟ୍ର ମହିଳାମାନଙ୍କୁ ପାଉରେ ଅନ୍ତର କରୁଥିବାରୁ ଏହା ଉଠାଇବା ପାଇଁ ଉଦ୍ୟମ ହେଉଛି ।

**ପୋକ ମାରିବାପାଇଁ ଇଲେକ୍‌ଟ୍ରୋନିକ୍ ଯନ୍ତ୍ର**

ନଡ଼ିଆ ଓ ତାଳଗଛ ନଷ୍ଟ କରୁଥିବା ଗୋଟିଏ ପ୍ରକାର ପୋକ (Red pam weevil) ଦାଉରୁ ଗଛକୁ ରକ୍ଷା କରିବାପାଇଁ କେନ୍ଦ୍ରୀୟ ଶସ୍ୟ ଗବେଷଣା ଅନୁଷ୍ଠାନ (CPCR) ଓ ଇଲେକ୍‌ଟ୍ରୋନିକ୍ସ ବିଭାଗର ମିଳିତ ଉଦ୍ୟମରେ ଗୋଟିଏ ଯନ୍ତ୍ର କେରଳରେ ଆବିଷ୍କୃତ ହୋଇଛି । ପୋକଦ୍ୱାରା ଗଛ ସଂକ୍ରମିତ ହେବାର ବହୁତ ପୂର୍ବରୁ ଏହି ଯନ୍ତ୍ର ସାହାଯ୍ୟରେ ସଂକ୍ରମଣର ଆଶଙ୍କା ଜାଣିହେବ ବୋଲି କୁହାଯାଉଛି ।

**ବ୍ୟାଙ୍କ ଡିପୋଜିଟ୍ ବୃଦ୍ଧି**

ଚଳିତ ଆର୍ଥିକ ବର୍ଷରେ ବ୍ୟାଙ୍କରେ ଜମା ପରିମାଣ ଓ ବିନିଯୋଗ ପୁଞ୍ଜିରେ ୧୩୫୨ କୋଟି ଟଙ୍କା ବୃଦ୍ଧିପାଇଛି ବୋଲି ରିଜର୍ଭବ୍ୟାଙ୍କ ସୂତ୍ରରୁ ପ୍ରକାଶ । ୧୯୮୩-୮୪ ବର୍ଷରେ କମର୍ସିଆଲ ବ୍ୟାଙ୍କଗୁଡ଼ିକରେ ୯ ୨୩୮ କୋଟି ଟଙ୍କା ଜମାଥିବା ସ୍ଥଳେ ୧୯୮୪-୮୬ରେ ଏହ ପରିମାଣ ୧୦,୫୯୦ କୋଟି ଟଙ୍କାକୁ ବୃଦ୍ଧି ପାଇଛି । ତେବେ ଅଭିବୃଦ୍ଧି ହାର ଗତବର୍ଷ ଶତକଡ଼ା ୧୮ ଥିବାବେଳେ ଏଇବର୍ଷ ଶତକଡ଼ା ୧୭,୫ ଥିଲା । ବ୍ୟାଙ୍କ ଗୁଡ଼ିକର ଋଣ ଓ ଜମା ଅନୁପାତ ବର୍ଷକ ପୂର୍ବରୁ ଶତକଡ଼ା ୬୭-୫୫ ଥିଲା । ଚଳିତବର୍ଷ ମାର୍ଚ୍ଚ ୨୯ରେ ଏହ ଅନୁପାତ ଶତକଡ଼ା ୬୭,୬୨କୁ କମି ଯାଇଥିଲା ।

**୧୮୩ ଆଞ୍ଚଳିକ ଗ୍ରାମ୍ୟବ୍ୟାଙ୍କ ସ୍ଥାପିତ**

ଷଷ୍ଠ ଯୋଜନା-କାଳ ମଧ୍ୟରେ ଦେଶରେ ୧୮୩ଟି ଆଞ୍ଚଳିକ ଗ୍ରାମ୍ୟ ବ୍ୟାଙ୍କ ପ୍ରତିଷ୍ଠା କରାଯାଇଛି ।

## ୱିମ୍ବଲଡନ ଟେନିସର ମହିଳା ସିଙ୍ଗଲ୍‌ସ ଚମ୍ପିଆନ୍ ତାଲିକା

| | |
|---|---|
| ୧୮୮୪—ଏମ୍. ୱାଟସନ୍ | ୧୮୮୫—ଏମ୍: ୱାଟସନ୍ |
| ୧୮୮୬—ବି: ବିଙ୍ଗଲେ | ୧୮୮୭—ଲଟଲ ଡଡ୍ |
| ୧୮୮୮—ଲଟଲ ଡଡ | ୧୮୮୯—ବି.ବିଙ୍ଗଲେ ହିଲୟାର୍ଡ |
| ୧୮୯୦—ଏଲରଇସ୍ | ୧୮୯୧—ଲଟଲ ଡଡ |
| ୧୮୯୨—ଲଟଲ ଡଡ୍ | ୧୮୯୩—ଲଟଲ ଡଡ୍ |
| ୧୮୯୪—ବି:ବିଙ୍ଗଲେ ହିଲୟର୍ଡ | ୧୮୯୫—ସି: କଷ୍ଟକୁପର |
| ୧୮୯୬—ସି.କୁପର | ୧୮୯୭—ବି. ବିଙ୍ଗଲେ ହିଲୟାର୍ଡ |
| ୧୮୯୮—ସି:କୁପର | ୧୮୯୯—ବି:ବିଙ୍ଗଲେ ହିଲୟର୍ଡ |
| ୧୯୦୦—ବି: ବିଙ୍ଗଲେ ହିଲୟାର୍ଡ | ୧୯୦୧—ସି. କୁପଷ୍ଟେରି |
| ୧୯୦୨—ଏମ: ଇ' ରବ | ୧୯୦୩—ଡି:ଡଗଲସ |
| ୧୯୦୪—ଡି:ଡଗଲସ୍ | ୧୯୦୫—ମେ:ସଟନ |
| ୧୯୦୬—ଡି.ଡଗଲସ୍ | ୧୯୦୭—ମେ: ସଟନ୍ |
| ୧୯୦୮—ସି:ଷ୍ଟେରୀ | ୧୯୦୯—ଡି:ବୁଥବେ |
| ୧୯୧୦—ଡି: ଚ୍ୟମ୍ବସେ | ୧୯୧୧—ଡି। ଚ୍ୟମ୍ବରସ୍ |
| ୧୯୧୨—ଇ:ଅମଦନ୍ ଲାରକମ୍ବ | ୧୯୧୩—ଡି:ଚ୍ୟମ୍ବରସ |
| ୧୯୧୪—ଡି:ଚ୍ୟମ୍ବରସ୍ | ୧୯୧୫-୧୮—ଅନୁଷ୍ଠିତ ହୋଇନଥି । |
| ୧୯୧୯—ଏସ୍:ଲେଙ୍ଗଲେନ୍ | ୧୯୨୦—ଏସ। ଲେଙ୍ଗଲେନ୍ |
| ୧୯୨୧—ଏସ୍:ଲେଙ୍ଗଲେନ୍ | ୧୯୨୨—ଏସ୍. ଲେଙ୍ଗଲେନ୍ |
| ୧୯୨୩—ଏସ୍: ଲେଙ୍ଗଲେନ୍ | |
| ୧୯୨୪—କେ:ମ୍ୟାକାନ | ୧୯୨୫—ଏସ ଲେଙ୍ଗଲେନ୍ |
| ୧୯୨୬—କେ. ଗଡଫ୍ରି | ୧୯୨୭—ହେଲେନ୍ ଉଇଲସ୍ |
| ୧୯୨୮—ହେଲେନ ଉଇଲସ୍ | ୧୯୨୯—ହେଲେନ୍ ଉଇଲସ୍ |
| ୧୯୩୦—ଏଚ:ମୁଡି | ୧୯୩୧—ସି ଅସେମ୍ |
| ୧୯୩୨—ଏଚ:ମୁଡି | ୧୯୩୩—ଏଚ.ମୁଡି |
| ୧୯୩୪—ଡି:ରାଉଣ୍ଡ | ୧୯୩୫—ଏଚ ମୁଡି |
| ୧୯୩୬—ଏଚ:ଜାକବ | ୧୯୩୭—ଡି:ରଉଣ୍ଡ |
| ୧୯୩୮—ଏଚ:ମୁଡି | ୧୯୩୯—ଏ: ମାର୍ବଲ |
| ୧୯୪୦-୪୫—ଅନୁଷ୍ଠିତ ହୋଇନାହିଁ, | ୧୯୪୬—ପି. ବେଟ୍ଜ |
| ୧୯୪୭—ଏମ୍:ଅସବର୍ଣ୍ଣ | ୧୯୪୮—ଏଲ ବ୍ରୋଗ |
| ୧୯୪୯—ଏଲ.ବ୍ରୋଗ | ୧୯୫୦—ଏଲ ବ୍ରୋଗ |
| ୧୯୫୧—ଡୋରିସ ହାର୍ଟ | ୧୯୫୨—ଏମ:କନୋଲି |
| ୧୯୫୩—ଏମ୍:କନୋଲି | ୧୯୫୪—ଏମ. କନୋଲି |
| ୧୯୫୫—ଏଲ:ବ୍ରୋଗ | ୧୯୫୬—ସିରଲେ ଫ୍ରାଏ |
| ୧୯୫୭—ଏ: ଗିବସନ୍ | ୧୯୫୮—ଏ: ଗିବସନ୍ |
| ୧୯୫୯—ଏମ୍:ବୁନୋ | ୧୯୬୦—ଏମ୍: ବୁନୋ |
| ୧୯୬୧—ଏ: ମର୍ଟମେର | ୧୯୬୨—କେ:ସୁଜମ୍ୟାନ୍ |
| ୧୯୬୩—ଏମ:ସ୍ମିଥ୍ | ୧୯୬୪—ଏମ୍.ବୁନୋ |
| ୧୯୬୫—ଏମ:ସ୍ମିଥ୍ | ୧୯୬୬—ବିଲିଜିନ୍ କିଙ୍ଗ୍ |

୧୯୬୭—ବି:ଜେ:କିଙ୍ଗ୍ | ୧୯୬୮—ବି:ଜେ:କିଙ୍ଗ୍
୧୯୬୯—ଏ:ଜୋନ୍ସ | ୧୯୭୦—ଏମ: କୋର୍ଟ
୧୯୭୧—ଇ: ଗୁଲାଗଙ୍ଗ | ୧୯୭୨—ବିଲିଜିନ୍ କିଙ୍ଗ୍
୧୯୭୩—ବି:ଜେ:କିଙ୍ଗ | ୧୯୭୪—କ୍ରିସ୍ ଇଭଟି ଲଏଡ୍
୧୯୭୫—ବି:ଜେ:କିଙ୍ଗ୍ | ୧୯୭୬—କ୍ରିସ୍ ଇଭଟି ଲଏଡ୍
୧୯୭୭—ଭି:ୱ ର୍ଡେ | ୧୯୭୮—ମାର୍ଟିନା ନାଭ୍ରାତି ଲୋଭା
୧୯୭୯—ମାର୍ଟିନା ନାଭ୍ରତି ଲୋଭା | ୧୯୮୦—ଇ:ଗୁଲାଗଙ୍ଗ
୧୯୮୧—କ୍ରିସ୍ ଇଭର୍ଟ ଲଏଡ୍ | ୧୯୮୨—ମାର୍ଟିନା ନାଭ୍ରାତି ଲୋଭା
୧୯୮୩—ମାର୍ଟିନା ନାଭ୍ରାତି ଲୋଭା | ୧୯୮୪—ମାର୍ଟିନା ନାଭ୍ରାତି ଲୋଭା
୧୯୮୫— ?

(୧୯୧୫—୧୮ ଏବଂ ୧୯୪୦–୪୫) ବିଶ୍ୱଯୁଦ୍ଧ ଯୋଗୁଁ ପ୍ରତିଯୋଗିତା ଅନୁଷ୍ଠିତ ହୋଇନାହିଁ ।

## ଓ୍ୱିମ୍ବଲଡନ୍ କୁଇଜ୍

୧—ୱିମ୍ବଲଡନ ପ୍ରତିଯୋଗିତା କେବେ ଆରମ୍ଭ ହୋଇଥିଲା ?

୨—ୱିମ୍ବଲଡନ ଆୟୋଜନ କରୁଥିବା କ୍ଲବ୍‌ର ନାମ କ'ଣ ?

୩—କେଉଁ ମସିହାଠାରୁ ୱିମ୍ବଲଡନରେ ପେଶାଦାର ଖେଳାଳୀ ଅଂଶଗ୍ରହଣ କଲେ ?

୪—ପ୍ରଥମ ପୁରୁଷ ୱିମ୍ବଲଡନ ଚମ୍ପିଅନ୍ କିଏ ?

୫—ସର୍ବାପେକ୍ଷା କମ୍ବୟସ୍କ ୱିମ୍ବଲଡନ ଚମ୍ପିଅନଙ୍କ ନାମ କ'ଣ ?

୬—ୱିମ୍ବଲଡନ ସହ ଡିଲାପ୍ ବୋର୍ଡ଼ଙ୍କ ସମ୍ପର୍କ କେଉଁଥିପାଇଁ ତାତ୍ପର୍ଯ୍ୟପୂର୍ଣ୍ଣ ?

୭—ୱିମ୍ବଲଡନ ଡବଲ୍ସ ସେମି ଫାଇନାଲସ୍ ଖେଳିଥିବା ଏକମାତ୍ର ଭାରତୀୟ ଯୋଡ଼ିଙ୍କ ନାମ କ'ଣ ଏବଂ ଏହା କେଉଁମସିହାର ଘଟଣା ?

୮—ଆମେରିକାର କେଉଁ ବିଶିଷ୍ଟ ଖେଳାଳୀ ଥରେ ମାତ୍ର ୱିମ୍ବଲଡନରେ ପୁରୁଷ ସିଙ୍ଗିଲ୍ସ ଡବଲ୍ସ ଓ ମିକ୍ସଡ଼ ଡବଲସ୍ ଚମ୍ପିଅନ୍ ହୋଇଥିଲେ ?

୯—ଭାରତର ରମେଶ କ୍ରିଷ୍ଣନ୍ କେଉଁବର୍ଷ ଜୁନିଅର ୱିମ୍ବଲଡନ ଚମ୍ପିଅନ୍ ହୋଇଥିଲେ ?

୧୦—ପ୍ରଥମ ମହିଳା ୱିମ୍ବଲଡନ ସିଙ୍ଗଲ୍ସ ଚମ୍ପିଅନ୍‌ଙ୍କ ନାମ କ'ଣ ?

ଉତ୍ତର

୧—୯ ଜୁଲାଇ ୧୮୭୭

୨—ଅଲ ଇଂଲଣ୍ଡ ଲନ ଟେନିସ୍ ଓ କ୍ରିକେଟ କ୍ଲବ୍

୩—୧୯୬୮

୪—ସ୍ପେନସର ୱିଲିୟମ ଗୋର

୫—ବ୍ଲର୍ଟ ଭଡ଼, ୧୫ ବର୍ଷ ୧୦ ମାସ

୬—ମାନ୍ୟତା ପ୍ରାପ୍ତ (ସିଡ଼େଡ୍) ପ୍ରଥମ ଭାରତୀୟ ଖେଳାଳୀ

୭—ବିଜୟ ଓ ଆନନ୍ଦ ଅମୃତରାଜ, ୧୯୭୨

୮—ଡବିରିଗ୍ସ ୧୯୩୯

୯—୧୯୭୯

୧୦—ମାଣ୍ଡ ୱାଟସନ୍

**ହସିବାରେ ୬୯ ବର୍ଷ କାରଦଣ୍ଡ**

ଫ୍ରାନସର ପ୍ରିନସିପ ସେଲଡୋନ ବାଷ୍ଟାଇଲରେ ୬୯ ବର୍ଷ ଧରି କାରଦଣ୍ଡ ଭୋଗିଥିଲେ । ସେ ସମ୍ରାଟ ଚତୁର୍ଦ୍ଦଶ ଲୁଇଙ୍କ ଚନ୍ଦା ମୁଣ୍ଡକୁ ଦେଖି ହସିବାରୁ ଏହି ଦଣ୍ଡ ଭୋଗିଲେ ।

**ବିଶ୍ୱର ପ୍ରଥମ ସୌର ଶକ୍ତିର ଗ୍ରାମ**

ଆମେରିକା ଯୁକ୍ତରାଷ୍ଟ୍ରର କେନ୍ଦ୍ର ଅରିଜୋନାର ଏକ ମରୁଗ୍ରାମ ସ୍କୁଚୁଲି ବିଶ୍ୱର ପ୍ରଥମ ସୌର ଶକ୍ତିର ଗ୍ରାମ । ଯେଉଁଠାରେ ଆମେରିକାବାସୀ ଖ୍ରଦାୟମାନେ ରହୁଛନ୍ତି । ସେଠାରେ ବିଦ୍ୟୁତ ଶକ୍ତି ନଥିବାରୁ ପାରଫିନ୍ ବତୀ ଉପରେ ଜନସାଧାରଣ ନିର୍ଭର କରିଛନ୍ତି ।

**ଜାପାନରେ ରକ୍ତରେ ସ୍ୱାକ୍ଷର କରାଯାଉଛି**

ଜାପାନର ସମ୍ରାଟମାନେ ୫୦୦ ବର୍ଷ ଧରି ତାଳପତ୍ରରେ ମଣିଷ ରକ୍ତରେ ଦସ୍ତଖତ କରି ରେକର୍ଡମାନ ରଖୁଥିଲେ । ଏହି ଦସ୍ତଖତ ଏ ପର୍ଯ୍ୟନ୍ତ ଅସ୍ପଷ୍ଟ ହୋଇ ନାହିଁ ।

**'ଦି ଫାୟାର' ବ୍ୟତୀତ ଅନ୍ୟ ସବୁ ପୋଡିଥିଲା**

ପ୍ୟାରିସର ରୁଇ କ୍ରୋଇକସ ନିକଟରେ ଏକ କାରଖାନା ୧୯୩୫ ସେପ୍ଟେମ୍ବର ୨୨ ରେ ପୋଡ଼ି ଭସ୍ମୀଭୂତ ହୋଇଗଲା । ମାତ୍ର 'ଦି ଫାୟାର' ପୁସ୍ତକଟି ପୋଡ଼ି ନ ଥିଲା ।

**ବିଶ୍ୱରେ ବିଶୁଦ୍ଧ କୂପଜଳ**

ଇଂଲଣ୍ଡର ମେଲବର୍ଣ୍ଣର ସେଣ୍ଟଆନ୍ କୂପର ଜଳ ୯୯,୯୯୯୯୨% ବିଶୁଦ୍ଧ । ବିଶ୍ୱରେ ଏହା ସବୁଠାରୁ ବିଶୁଦ୍ଧ କୂପଜଳ ।

**ବିଶ୍ୱର ଉତ୍ତପ୍ତ ସାଗର**

ପଶ୍ଚିମ ଏସିଆର ପାରସ୍ୟ ଉପସାଗର ବିଶ୍ୱରେ ଏକମାତ୍ର ଉତ୍ତପ୍ତ ସାଗର । ଏହାର ଉତ୍ତାପ ୯୬ ଡିଗ୍ରୀ ଫାରେନହିଟ୍ ।

**ମହିଳାମାନେ ମୁଣ୍ଡରେ ଦର୍ପଣ ରଖନ୍ତି**

ଗୁଏନାର ଫୋଉଟା ଜୋଲୋନ ଓ ଆଫ୍ରିକାରେ ମହିଳାମାନେ କେଶ କୁଣ୍ଡାଇବା ପରେ ମୁଣ୍ଡରେ ଦର୍ପଣ ରଖିଥାନ୍ତି । ସେମାନଙ୍କର ବନ୍ଧୁମାନେ ତାହା ବ୍ୟବହାର ମଧ୍ୟ କରନ୍ତି ।

**ଇଂଲଣ୍ଡରେ ସର୍ବପ୍ରଥମେ କାଚର ଆବିଷ୍କାର**

ଇଂଲଣ୍ଡର ସେଣ୍ଟ ପିଟେର ଚର୍ଚ୍ଚରେ ୬୭୪ ଖ୍ରୀଷ୍ଟାବ୍ଦର କାଚ ଫଳକ ଏବେ ବି ରହିଛି । ସେହି ବର୍ଷ ଇଂଲଣ୍ଡରେ କାଚ ତିଆରି ହୋଇଥିଲା ।

**ଲୋହିତ ସାଗରରେ ମୂଲ୍ୟବାନ ଧାତବ ଦ୍ରବ୍ୟ**

ଲୋହିତ ସାଗରରେ ମୂଲ୍ୟବାନ ଧାତବଦ୍ରବ୍ୟ ଏବଂ ସୁନା ରହିଥିବାର ସନ୍ଧାନ ମିଳିଛି । ଲୁହା, ତମ୍ବା, ରୁପା ପ୍ରଭୃତି ଥିବାର ଅନୁସନ୍ଧାନକାରୀମାନେ ଜଣାଇଛନ୍ତି ।

**ଦୁଇ ହାତରେ ଗ୍ରୀକ୍ ଏବଂ ଲାଟିନ୍ ଲେଖା**

ଆମେରିକାର ରାଷ୍ଟ୍ରପତି ଜେମସ୍ ଏ ଗାରଫିଲଡ୍ ଲାଟିନ୍ ଗୋଟିଏ ହାତରେ ଏବଂ ଗ୍ରୀକ୍ ଅନ୍ୟ ହାତରେ ଏକା ସଙ୍ଗରେ ଲେଖିପାରୁଥିଲେ ।

**ବାୟୁ ଦୂଷିତକରଣରେ ମୃତ୍ୟୁ**

ପ୍ରତିବର୍ଷ ଚିକାଗୋରେ ବାୟୁ ଦୂଷିତ କରଣରେ ୧୫୦୦ ବ୍ୟକ୍ତି ମୃତ ହେଉଛନ୍ତି । ଚିକାଗୋ ହେଉଛି ଅପରାଧ ନଗର ।

**ବିଶ୍ୱର ସବୁଠାରୁ ନିଷ୍ଠୁର ମନ୍ତ୍ରୀ**

ପୋ-ୟେନ୍ ଚାନ୍ ସମ୍ରାଟ୍ ତୋହାନ ତିମୁର୍ ( ୧୩୨୦-୧୩୭୦ )ଙ୍କର ନିଷ୍ଠୁର ମନ୍ତ୍ରୀ ଥିଲେ । ଯେତେବେଳେ ପ୍ରଜାମାନେ ବିପ୍ଳବ କଲେ, ପୋ-ୟେନ ଚ୍ୟାଙ୍ଗ, ୱାଙ୍ଗ, ଲିଉ, ଲି ଏବଂ ଲୁଓ ପ୍ରଭୃତି ପରିବାରର ପୁରୁଷ, ନାରୀ ଓ ପିଲାପିଲିଙ୍କୁ ହାତ୍ୟାର ନିର୍ଦ୍ଦେଶ ଦେଲେ । ଚତୁର୍ଦ୍ଦଶ ଶତାବ୍ଦୀରେ ୫୭ ନିୟୁତ ଲୋକସଂଖ୍ୟା ମଧ୍ୟରୁ ୫୦ ନିୟୁତ ଉପରୋକ୍ତ ସଂଜ୍ଞାର ପ୍ରଜା ରହିଥିଲେ । କିନ୍ତୁ ସାମ୍ରାଜ୍ୟ ଦ୍ୱାରା ସୌଭାଗ୍ୟ-ବଶତଃ ରାଜା ଓ ମନ୍ତ୍ରୀ ବିତାଡ଼ିତ ହୋଇଥିଲେ । ଫଳରେ ୫୦ ନିୟୁତ ପ୍ରଜା ଗଣହତ୍ୟାରୁ ରକ୍ଷା ପାଇଗଲେ ।

**ଖପୁରୀ ଫୁଲଦାନି**

ସ୍ୱେଡର ସେଭିଲିର ରାଜା ଅବାଦ ଏଲ ମୋତାଦିଦ୍ ମଣିଷ ଖପୁରୀରେ ଫୁଲଦାନି କରିଥିଲେ । ଏହି ଖପୁରୀଗୁଡ଼ିକ ତାଙ୍କର ଶତ୍ରୁମାନଙ୍କର ।

**ବିଶ୍ୱର ବୃହତ୍ତମ ଉପସାଗର**

ବିଶ୍ୱର ବୃହତ୍ତମ ଉପସାଗର ହେଉଛି ବଙ୍ଗୋପସାଗର । ଶ୍ରୀଲଙ୍କାରୁ ବର୍ମାର ପାଗୋଡ଼ା ସଙ୍କେତ ପର୍ଯ୍ୟନ୍ତ ୨୨୫୦ ମାଇଲ ହେଉଛି ଏହାର ଉପକୂଳ । ଏହାର ପ୍ରସ୍ଥ ୧୦୭୫ ମାଇଲ ।

**ବ୍ୟବସ୍ଥାପକ ୭୫ ଥର ଅଭିଯୁକ୍ତ**

ଏଥେନ୍ସ ବ୍ୟବସ୍ଥାପକ ଆରିଷ୍ଟୋଫେନ୍ ( ଖ୍ରୀଷ୍ଟପୂର୍ବ ୪୧୨ ରୁ ଖ୍ରୀଷ୍ଟପୂର୍ବ ୩୪୫ ) ୭୫ ଥର ଅଭିଯୁକ୍ତ ହୋଇଥିଲେ । ମାତ୍ର ସେ କୌଣସି ଅଭିଯୋଗରେ ଦଣ୍ଡିତ ହୋଇ ନଥିଲେ ।

**ସୁଇଜରଲ୍ୟାଣ୍ଡର କୌତୂହଳପ୍ରଦ ଟାଉନ**

ଗ୍ଲାଷ୍ଟନ, ବିଲ୍, ଏପଲସ୍, ଗେଟସ୍, ମାଇକେରି, ବାଏ, ସ୍ମାବସ୍, ଗ୍ରୁମ୍ ଟାଉନ୍‌ଗୁଡ଼ିକର ନାମ କୌତୂହଳପ୍ରଦ ।

**ଆଠଲକ୍ଷ ବର୍ଷର ବୃହତ୍ତମ ହସ୍ତୀ**

ରୁଷ୍‌ର ରୁଡନି ଟାଉନ୍‌ରେ ଆଠଲକ୍ଷ ବର୍ଷ ତଳର ବୃହତ୍ତମ ହସ୍ତୀ ରହିଥିଲା । ହସ୍ତୀର ଓଜନ ୭ ଟନ୍ ଏବଂ ଉଚ୍ଚତା ୩.୫ ମିଟର ।

**ଜାପାନୀଙ୍କ ଲେଖା ଡାହାଣରୁ ବାମକୁ**

ଭାରତୀୟମାନଙ୍କ ପୁସ୍ତକର ଶେଷ ପୃଷ୍ଠା ହେଉଛି ଜାପାନୀ ପୁସ୍ତକର ପ୍ରଥମ ପୃଷ୍ଠା । ଜାପାନୀମାନେ ଡାହାଣରୁ ବାମକୁ ଲେଖିଥାନ୍ତି ।

**ଇଂରାଜୀ ଭାଷାର ୪୯୦,୦୦୦ ଶବ୍ଦ**

ଇଂରାଜୀ ଭାଷାରେ ୪୯୦,୦୦୦ ଶବ୍ଦ ରହିଛି । ଅଧିକନ୍ତୁ ୩୦୦,୦୦୦ ଶବ୍ଦ ପାରିଭାଷିକ ଶବ୍ଦାବଳୀଭାବେ ବ୍ୟବହାର କରାଯାଉଛି ; ମାତ୍ର କେହି ୬୦,୦୦୦ରୁ ଅଧିକ ଶବ୍ଦ ବ୍ୟବହାର କରୁନାହାନ୍ତି । ୧୯୩୦ ମସିହାରେ ସି. କେ. ଓଜ୍‌ଡେନଙ୍କଦ୍ୱାରା ୮୫୦ଟି ମୌଳିକ ଇଂରାଜୀ ଶବ୍ଦ ଉଦ୍ଭାବିତ ହୋଇଥିଲା । ୧୦୦୦୦ ଶବ୍ଦ ଲିଖିତ ଏବଂ ୫୦୦୦ ଶବ୍ଦ କଥିତ ଇଂରାଜୀ ଭାବରେ ଗ୍ରହଣ କରାଯାଉଛି ।

**ଅନ୍ଧ ଚକ୍ଷୁ ଫେରିପାଇଲେ**

କାନାଡ଼ାର ଅଟୱାସ୍ଥିତ ରବ ଅଉବ୍ରେ ଆଠବର୍ଷଧରି ଚକ୍ଷୁ ହରାଇଥିଲେ । ସେ ତାଙ୍କ କୁକୁର ବୁଟୋନସ୍‌କୁ ଝୁଣ୍ଟିପଡ଼ିବା ଫଳରେ ଭୂମିରେ ପଡ଼ି ଆଶ୍ଚର୍ଯ୍ୟଜନକ ଭାବରେ ଦୃଷ୍ଟିଶକ୍ତି ଫେରି ପାଇଛନ୍ତି ।

**ଉତ୍ତର ପ୍ରଦେଶର ନଉଟାଙ୍କି ନୃତ୍ୟ**

ଉତ୍ତର ପ୍ରଦେଶରେ ଲୋକନୃତ୍ୟ ନଉଟାଙ୍କି ରାମାୟଣ ଓ ମହାଭାରତ ପୃଷ୍ଠଭୂମିରେ ପରିବେଷଣ କରଯାଏ । ନର୍ତ୍ତକୀ ଅଳଙ୍କାର ସହକାରେ ଭୂଷିତା ହୋଇ ନୃତ୍ୟ କରିଥାଏ । ଏହି ନୃତ୍ୟର ବିଚିତ୍ରତା ମଧ୍ୟ ରହିଛି ।

**କଥା କହିବାରେ ବିଶ୍ୱରେକର୍ଡ**

ଶ୍ରୀଲଙ୍କାର ୧୭ ବର୍ଷ ବୟସ୍କ ସ୍କୁଲଛାତ୍ର କପିଳ କୁମାର ନିରବଚ୍ଛିନ୍ନ ଭାବରେ ୧୬୨ ଘଣ୍ଟା ପର୍ଯ୍ୟନ୍ତ କଥାବାର୍ତ୍ତା କରିପାରିଥିଲେ । ପୂର୍ବରୁ ୧୯୭୭ରେ ଅକ୍ସଫୋର୍ଡ ବାସିନ୍ଦା ମେଣ୍ଡ କ୍ୟାଣ୍ଡେଲ ୧୫୦ ଘଣ୍ଟାକାଳ କଥାବାର୍ତ୍ତା କରିଥିଲେ ।

**ଚୀନ୍ ନୌବାହିନୀ ଶକ୍ତି ବୃଦ୍ଧି**

ଚୀନ ନୌବାହିନୀରେ ସୈନ୍ୟସଂଖ୍ୟା ୩ ଲକ୍ଷ ୬୦ ହଜାର ହୋଇଛି । ଏବେ ୨ଟି ପରମାଣୁ ଶକ୍ତିଚାଳିତ ବୁଡ଼ାଜାହାଜ, ଶତାଧିକ ଯୁଦ୍ଧ ଜାହାଜ ଏବଂ ୮୦୦ରୁ ଅଧିକ ଶକ୍ତିଶାଳୀ ପେଟ୍ରୋଲ ବୋଟ୍ ରହିଅଛି ।

**ମ୍ୟାଲେରିଆ—ଅପସ୍ମାର ପାଇଁ ନୂଆ ଔଷଧ**

ମ୍ୟାଲେରିଆ ଓ ଅପସ୍ମାର ଲାଗି ଦୁଇଟି ନୂତନ ଔଷଧ ବାହାର କରଯାଇଅଛି । ଏହି ଔଷଧଗୁଡ଼ିକର ନାମ ଯଥାକ୍ରମେ ଅଯୁଷ-୬୪ ଏବଂ ଅଯୁଷ-୭୫ ।

**ଓଡ଼ିଶାରେ ୩୭୩ ନିୟୁତ କୁକୁଡ଼ା ଅଣ୍ଡା ଉତ୍ପାଦିତ**

ରାଜ୍ୟରେ ୦୬୯ଟି କୁକୁଡ଼ା ପାଳନ ସମବାୟ ସମିତି ପ୍ରତିଷ୍ଠା କରଯାଇ ନିୟମିତ ୩୭୩ ନିୟୁତ କୁକୁଡ଼ା ଅଣ୍ଡା ଉତ୍ପାଦିତ ହୋଇପାରୁଛି ।

**ଭାରତରେ ୧୧୯୭ଟି ଦ୍ୱୀପ**

ଭାରତରେ ମୋଟ ଦ୍ୱୀପସଂଖ୍ୟା ୧୧୯୭ । ସେଥିମଧ୍ୟରୁ ୭୨୩ଟି ଦ୍ୱୀପ କେବଳ ଆରବ ସାଗରରେ ରହିଛି । ସମସ୍ତ ଦ୍ୱୀପର ଆୟତନ ୯୪୬୩.୫୨ କିଲୋମିଟର ଏବଂ ଲୋକସଂଖ୍ୟା ହେଉଛି ୪ ଲକ୍ଷ ୩୩ ହଜାର । ଆରବ ସାଗର ଓ ବଙ୍ଗୋପ ସାଗରରେ ଯଥାକ୍ରମେ ୩୫୮ ଓ ୨୧୯ଟି ଦ୍ୱୀପରେ ଜନବସତି ରହିଛି ।

**ଭାରତର ବୃହତ୍ତମ ଥିଏଟର**

ନୂଆଦିଲ୍ଲୀର ଏସିଆ-କ୍ରୀଡ଼ା ଗ୍ରାମରେ ଥିବା 'ଏସିଆଡ଼ ସେଣ୍ଟର' ଦେଶର ବୃହତ୍ତମ ଥିଏଟର । ଏଥିରେ ୩୫୦ଟି ସ୍ୱତନ୍ତ୍ର ଷ୍ଟେଜ୍‌ଲାଇଟ୍ ରହିଛି ।

**୧୯୮୪ରେ ବିଶ୍ୱର ଶସ୍ୟ ଉତ୍ପାଦନ**

୧୯୮୪ରେ ବିଶ୍ୱରେ ୧୭୮ କୋଟିଟନ୍ ଶସ୍ୟ ଉତ୍ପାଦନ ହୋଇଛି । ପୂର୍ବବର୍ଷ ୧୬୪ କୋଟି ୧୦ ଲକ୍ଷ ଟନ୍ ଶସ୍ୟ ଉତ୍ପାଦନ ହୋଇଥିଲା ।

**ବିଶ୍ୱର ସବୁଠାରୁ ବୟସ୍କ ବ୍ୟକ୍ତି**

ଜାପାନର ସିଗେଚିଓ ଇଜୁମୀ ବିଶ୍ୱର ସବୁଠାରୁ ବୟସ୍କ ବ୍ୟକ୍ତି । ତାଙ୍କର ବୟସ ୧୨୦ ବର୍ଷ ।

**ମଙ୍ଗଳ ଗ୍ରହକୁ ମଣିଷ ଯିବେ**

ଏକବିଂଶ ଶତାବ୍ଦୀର ପ୍ରଥମ ଦଶ ବର୍ଷ ମଧ୍ୟରେ ମହକାଶଯାତ୍ରୀମାନେ ମଙ୍ଗଳ ଗ୍ରହରେ ଅବତରଣ କରିବେ । ମହାକାଶଯାତ୍ରୀମାନେ ପୃଥିବୀ ବାହାରେ ତିନିବର୍ଷ ରହିବେ ।

**ଦକ୍ଷିଣ କୋରିଆରେ ଆତ୍ମହତ୍ୟା ସଂଖ୍ୟା**

୧୯୮୨ରେ କୋରିଆରେ ପ୍ରତି ଏକଲକ୍ଷ ଲୋକରେ ୨୨ ଜଣ ଲୋକ ଆତ୍ମହତ୍ୟା କରିଥିବା ଜଣାଯାଇଛି । ପୃଥିବୀରେ ଦକ୍ଷିଣ କୋରିଆ ଆତ୍ମହତ୍ୟା ଦିଗରେ ଷଷ୍ଠସ୍ଥାନ ଅଧିକାର କରିଛି ।

**ନୂତନ ଧରଣର କୁକୁଡ଼ା**

ଜର୍ଜିଆ ବିଶ୍ୱବିଦ୍ୟାଳୟର ପ୍ରାଣୀବିଜ୍ଞାନବିତ୍‌ମାନେ ଦେହରେ ରୁମ ନଥିବା ଏକପ୍ରକାର କୁକୁଡ଼ାଛୁଆ ଜନ୍ମହେବା ପାଇଁ ଉପାୟ ବାହାର କରିଛନ୍ତି । ଏହି ଜାତିର କୁକୁଡ଼ାମାନେ ଗ୍ରୀଷ୍ମକାଳର ଝାଞ୍ଜିପବନ ସହ୍ୟ କରିପାରୁଛନ୍ତି ।

**ଓଡ଼ିଶାରୁ ୧୨୪ କୋଟି ଟଙ୍କାର ସାମଗ୍ରୀ**

ଗତବର୍ଷ ରାଜ୍ୟରୁ ୧୨୪ କୋଟି ଟଙ୍କାର ସାମଗ୍ରୀ ବିଦେଶକୁ ରପ୍ତାନୀ ହୋଇଛି । ସେହିବର୍ଷ ଭାରତରୁ ୧୦ ହଜାର ୨ ଶହ ୮୮ ଟଙ୍କାର ରପ୍ତାନୀ କାରବାର କରାହୋଇଥିଲା ।

**ନେପାଳରେ ଦୈନିକ ସମ୍ବାଦପତ୍ର ୨୩୪**

ନେପାଳରେ ୮୪୪ଟି ଦୈନିକ, ସାପ୍ତାହିକ ଓ ପାକ୍ଷିକ ପତ୍ରପତ୍ରିକା ପ୍ରକାଶିତ ହୋଇଥାଏ । ଏହି ରାଜ୍ୟର ଜନସଂଖ୍ୟା ୧୬ ନିୟୁତ ଏବଂ ସାକ୍ଷର ସଂଖ୍ୟା ୨୪% । ୪୪୪ ପତ୍ର ପତ୍ରିକା ମଧ୍ୟରୁ ୨୩୪ଟି ଦୈନିକ ।

**ଓଡ଼ିଶାରେ ମଇ ମାସରେ ୪୨୬ଟି ଅଗ୍ନିକାଣ୍ଡ**

ଚଳିତବର୍ଷ ମଇ ମାସରେ ୪୨୬ ଅଗ୍ନିକାଣ୍ଡ ଘଟିଛି । ପୂର୍ବବର୍ଷ ଏହି ମାସରେ ୪୪୭ଟି ଅଗ୍ନିକାଣ୍ଡ ଘଟିଥିଲା । ଚଳିତ ବର୍ଷ ଅଗ୍ନିକାଣ୍ଡରେ ୮ ଜଣ ବ୍ୟକ୍ତି ମୃତ ଏବଂ ୧୦୧ ଜଣ ଆହତ ।

**ଭାରତରେ ଅନ୍ଧ ୯୦ ଲକ୍ଷ**

ଭାରତରେ ଅନ୍ଧ ପ୍ରାୟ ୯୦ ଲକ୍ଷ ରହିଛନ୍ତି । ପ୍ରାୟ ୪୫୦ ଲକ୍ଷ ବ୍ୟକ୍ତିଙ୍କର ଦୃଷ୍ଟିଦୋଷ ରହିଛି । ମୋତିଆବିନ୍ଦୁ ଜନିତ ଅନ୍ଧ ସଂଖ୍ୟା ୫୦ ଲକ୍ଷ ଏବଂ ପ୍ରତିବର୍ଷ ଏହି କାରଣରୁ ପ୍ରାୟ ୧୦ ଲକ୍ଷ ବ୍ୟକ୍ତି ଅନ୍ଧ ହୋଇଥାନ୍ତି । ଓଡ଼ିଶାରେ ୩ ଲକ୍ଷ ୭୨ ହଜାର ଅନ୍ଧ ଅଛନ୍ତି ।

**ଗୋଟିଏ ଗୋଡ଼ରେ ଆଟଲାଣ୍ଟିକରୁ ପ୍ରଶାନ୍ତ ମହାସାଗର ଦୌଡ଼**

୧୯୮୦ ମାର୍ଚ୍ଚ ୩୧ରେ କାନାଡ଼ାର ସିଭ୍ ଫୋନିଓ କୃତ୍ରିମ ଗୋଡ଼କୁ ଆଟଲାଣ୍ଟିକ୍ ମହାସାଗରରେ ପିଙ୍ଗିଦେଇଥିଲେ । ସେ ତାଙ୍କର ଦ୍ୱିତୀୟ କୃତ୍ରିମ ଗୋଡ଼କୁ ବି ପ୍ରଶାନ୍ତ ମହାସାଗରରେ ପିଙ୍ଗିଥିଲେ । ଏହାମଧ୍ୟରେ ସେ କାନାଡ଼ାର ଏକ ପାର୍ଶ୍ୱରୁ ଅନ୍ୟ ପାର୍ଶ୍ୱ ପର୍ଯ୍ୟନ୍ତ ୨୧-୯୦ କିଲୋମିଟର ଦୌଡ଼ରେ ଯାଇପାରିଛନ୍ତି । ସେ ଛଅଥର ପର୍ଯ୍ୟନ୍ତ କୃତ୍ରିମ ଗୋଡ଼ ବଦଳ କରାଇଛନ୍ତି ।

**ଦେଶରେ ୧୨୫ଟି ବିଶ୍ୱବିଦ୍ୟାଳୟ**

ଭାରତରେ ସମ୍ପ୍ରତି ୧୨୫ଟି ବିଶ୍ୱବିଦ୍ୟାଳୟ ରହିଛି । ବିଶ୍ୱବିଦ୍ୟାଳୟ ସ୍ତରର ୧୫ଟି ପ୍ରତିଷ୍ଠାନ ରହିଛି ।

**ଇଂଲଣ୍ଡରେ ଧନିକ ଗୋଷ୍ଠୀ**

ଇଂଲଣ୍ଡରେ ବହୁ ପୁରୁଷରୁ ଧନୀମାନଙ୍କ ତୁଳନାରେ ଏବେ ମାଂସ ବା ତେଲଗତି ଜିନିଷ ବିକ୍ରୀ କରୁଥିବା ବ୍ୟବସାୟୀମାନେ ସବୁଠାରୁ ଧନୀବ୍ୟକ୍ତି । ଇଂଲଣ୍ଡର ରାଣୀ ସମ୍ପ୍ରତି ଶ୍ରେଷ୍ଠଧନୀ । ତାଙ୍କର ସମ୍ପତ୍ତିର ପରିମାଣ ୭୫୦ କୋଟି ପାଉଣ୍ଡ । ରାଣୀଙ୍କ ପରେ ଡ୍ୟୁକ୍‌ଙ୍କର ସମ୍ପତ୍ତି ପରିମାଣ ୨୦୦ କୋଟି ପାଉଣ୍ଡ ।

**ଓଡ଼ିଶାରେ ୧୪ଟି ନରବଳି**

ରାଜ୍ୟରେ ୧୯୭୭ଠାରୁ ୧୯୮୪ ମସିହା ମଧ୍ୟରେ ୧୪ଟି ନରବଳି ଦିଆଯାଇଛି ।

**ଖାଦ୍ୟବିନା ବୁଢ଼ିଆଣୀ ୫ ବର୍ଷ ବଞ୍ଚେ**

'ଡାଡ଼ିକ୍ରାଡ଼ା' ନାମକ ବୁଢ଼ିଆଣୀ ବିନାଖାଦ୍ୟରେ ୫ ବର୍ଷ ବଞ୍ଚି ରହିପାରିବ । ଭୂମି ଶୁଖିଗଲେ ଏହି ବୁଢ଼ିଆଣୀ ମୃତବତ୍ ହୁଏ ଏବଂ ଜଳହେଲେ ପୁନର୍ଜୀବନ ଲାଭକରେ ।

**ନିକଟସ୍ଥ ନକ୍ଷତ୍ରର ପୃଥିବୀଠାରୁ ଦୂରତା**

ପୃଥିବୀଠାରୁ ନିକଟସ୍ଥ ନକ୍ଷତ୍ରର ଦୂରତା ହେଉଛି ସାଢ଼େଚାରି ଆଲୋକ ବର୍ଷ । ଗୋଟିଏ ଆଲୋକ ବର୍ଷ ହେଉଛି ୬,୦୦୦,୦୦୦,୦୦୦,୦୦୦ ମାଇଲ୍ ।

**ବିଶ୍ୱର ଶୁଷ୍କ ଅଞ୍ଚଳ**

ମିଶରର କାରଗାହ ହେଉଛି ବିଶ୍ୱର ଶୁଷ୍କ ଅଞ୍ଚଳ । ସେଠାରେ କେବେ ବର୍ଷା ହୁଏନାହିଁ ।

**ମସ୍ତିଷ୍କ-କୋଷ ମିନିଟରେ ୧୦୦ଟି ମୃତ ହୁଏ**

ମଣିଷ ମସ୍ତିଷ୍କର ଓଜନ ୩ ପାଉଣ୍ଡ (୧-୪ କିଲୋଗ୍ରାମ) । ହାତୀର ମସ୍ତିଷ୍କ-ଓଜନ ୧୧ ପାଉଣ୍ଡ (୫ କିଗ୍ରା) । ମଣିଷର ମସ୍ତିଷ୍କ କୋଷ ଗୋଟିଏ ମିନିଟ୍‌ରେ ୧୦୦ଟା ମୃତ୍ୟୁ ମୁଖରେ ହିଁ ପଡ଼ିଥାଏ ।

**ଚନ୍ଦ୍ରର ଓଜନ ୭୩,୦୦୦,୦୦୦.୦୦୦,୦୦୦,୦୦୦,୦୦୦**

ଚନ୍ଦ୍ର (ଉପଗ୍ରହ)ର ଓଜନ ୭୩,୦୦୦,୦୦୦,୦୦୦,୦୦୦,୦୦୦,୦୦୦ ଟନ୍ । ଏହାର ବ୍ୟାସ ୩୫୦୦ କିଲୋମିଟର । ପୃଥିବୀଠାରୁ ଏହା ୩୮୪୦୦୦ କିଲୋମିଟର ଦୂରରେ ରହିଛି ।

**ବିଶ୍ୱର ଦ୍ରୁତଗାମୀ ପକ୍ଷୀ ସ୍ୱତକ**

ସ୍ୱତକ (Swift) ପକ୍ଷୀ ଘଣ୍ଟାରେ ୧୭୧ କିଲୋମିଟର ଗତି କରିପାରେ । ଏହା ବିଶ୍ୱର ଦ୍ରୁତଗାମୀ ପକ୍ଷୀ ।

**ଜନ୍ମଦିନର ପରଦିବସର ନାମାନୁସାରେ ଶିଶୁର ନାମକରଣ**

ପ୍ରତ୍ୟେକ ତିବତୀୟ ଶିଶୁ ଜନ୍ମଦିବସର ପରବର୍ତ୍ତୀ ଦିନର ନାମ ଅନୁସାରେ ନାମିତ ହୁଅନ୍ତି । ଉଦାହରଣ ଅନୁସାରେ ବୁଧବାର ଜନ୍ମହେଲେ ଟାଙ୍ଗମି, ଗୁରୁବାର ଜନ୍ମହେଲେ ତାଙ୍କର ନାମକରଣ କରାଯାଏ ।

**ତାଳ ଗଛର ପାଞ୍ଚୋଟି ଶାଖା**

ବୁଟୋଟ୍, ସ୍ପେନ୍‌ରେ ତାଳଗଛ ଗୁଡ଼ିକର ପାଞ୍ଚୋଟି ଶାଖା ରହିଛି । ବିଶ୍ୱରେ ଏପରି ତାଳଗଛ ଅନ୍ୟତ୍ର ଦେଖାଯାଏ ନାହିଁ ।

**ପିଆଜ ପକ୍ଷାଘାତ ରୋଗରୁ ମୁକ୍ତ କରାଏ**

ନିୟମିତ ଭାବେ ପିଆଜ ଖାଇଲେ ପକ୍ଷାଘାତ ରୋଗ ହୁଏନାହିଁ । ପିଆଜ ରକ୍ତ ସଞ୍ଚାଳନକୁ ସାଧାରଣ ସ୍ତରକୁ ନିଏ ଏବଂ ହୃତ୍‌ପିଣ୍ଡକୁ ରକ୍ଷା କରିଥାଏ ।

**ବିଶ୍ୱର ବୃହତ୍ତମ ଫୁଲକୋବି**

ଇଂଲଣ୍ଡର ଫୁଣ୍ଡିଙ୍ଗ୍‌ଷ୍ଟୋନ୍‌ର ଜେ.ଟି. କୁକ୍ ୧୯୬୬ ମସିହାରେ ୨୩ କିଲୋଗ୍ରାମ୍ ୯୦୦ ଗ୍ରାମର ଏକ ବୃହତ୍ତମ ଫୁଲକୋବି ଉତ୍ପାଦନ କରିଥିଲେ । ବିଶ୍ୱରେ ଏହି ଓଜନର ଫୁଲକୋବି ଆଉ ଉତ୍ପାଦିତ ହୋଇନାହିଁ ।

●

R. N. I Regd. No. 4377 61 Regd. No. 0,73
CHHATRASATHI 23rd Yr. ( Monthly ) 8th Month 1985



Printed & Publieshed by B. Das on behalf of M/s. J. Mohapatra & Co. at the Grampanchayat Press Kaligali, Cuttack 2